No share prices,
no political fortunes, yet...

# Over 40% of Heritage readers are professionals or executives, 61% from households with a professional / executive as the chief wage earner. Half hold a postgraduate degree or a professional diploma.

– from an IMRB survey conducted in Oct. 1986




It's an unusual magazine. It has a vision for today and tomorrow.

It features ancient cities and contemporary fiction, culture and scientific developments, instead of filmstar interviews and political gossip. And it has found a growing readership, an IMRB survey reveals. Professionals, executives and their families are reading The Heritage in depth – 40% from cover to cover, 42% more than half the magazine.

More than 80% of The Heritage readers are reading an issue more than once.

And over 90% are slowly building their own Heritage collection.

Isn't it time you discovered why?

CMP-2155



# THE HERITAGE



## ଜମିବ ଭଲ ଗ'ର ଆସର
## ଲିପ୍‌ଟନ ବିସ୍କୁଟର ନାହିଁ ପଟାନ୍ତର

ଗ'ର ଆସର ଏବେ ଜମି ଉଠିବ— ନୂଆ ଲିପ୍‌ଟନ
ବିସ୍କୁଟ ସାଙ୍ଗରେ । ସ୍ୱାଦରେ ଭରା, ହାଲୁକା
ତାଜା ଓ ମୁଚମୁଚିଆ । ସତରେ
ଲୋଭ ସମ୍ଭାଳିବା କଷ୍ଟକର ।
ଗ' ଆଉ ଲିପ୍‌ଟନ
ବିସ୍କୁଟ —ବାଃ '
ଜମିଥାଏ ଭାରି
ବଢ଼ିଆ ।



# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

---

"କନକ ଉପତ୍ୟକାର କାହାଣୀ" ର ତରୁଣ ନାୟକ ରଜୁ ବର୍ତ୍ତମାନ ଗୋଟିଏ ଅଦ୍ଭୁତ ମୂଲକରେ ପ୍ରବେଶ କରୁଛି । ସେ ରାଜ୍ୟର ରାଜା ଓ ପୁରୋହିତ ଅନେକ ଜ୍ଞାନ ବିଜ୍ଞାନର ଅଧିକାରୀ ବୋଲି ଗର୍ବ କରନ୍ତି । କିନ୍ତୁ ସେସବୁର ମୂଲ୍ୟ କେତେଦୂର ? ତାହା ଜଣାପଡିବ ପରେ ।

## ଅମରବାଣୀ

ଅଶ୍ୱଃ ଶସ୍ତ୍ରଂ ଶାସ୍ତ୍ରଂ ବୀଣା ବାଣୀ ନରଶ୍ଚ ନାରୀ ଚ ।
ପୁରୁଷ ବିଶେଷଂ ପ୍ରାପ୍ତା, ଭବନ୍ତି ଯୋଗ୍ୟା ଅଯୋଗ୍ୟାଶ୍ଚ ॥

[ଅଶ୍ୱ, ଶାସ୍ତ୍ର, ଅସ୍ତ୍ର, ବୀଣା ଓ ବାଣୀର ବ୍ୟବହାର ଯେପରି ବ୍ୟବହାରକାରୀର ଯୋଗ୍ୟତା ଉପରେ ନିର୍ଭର କରେ, ନର ନାରୀ ଭିତରେ ସମ୍ପର୍କ ବି ସେହିପରି ପରସ୍ପର ବ୍ୟବହାର ଉପରେ ନିର୍ଭର କରେ ।]

---

ବର୍ଷ : ୨୧ ମାର୍ଚ୍ଚ ୧୯୮୮ ଅଙ୍କ : ୯

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

## ଜହ୍ନମାମୁଁ ସମ୍ବାଦ-ଚିଠା




### ଟାଇଟାନିକର ସମାଧି ଉଦ୍ଧାର

୧୯୧୨ ମସିହା ଏପ୍ରିଲ୍, ୧୫ ତା: ଭୋର ସମୟରେ ସେତେବେଳର ବୃହତ୍ତମ ଜାହାଜ ଟାଇଟାନିକ୍ ତା'ର ପ୍ରଥମ ଜଳଯାତ୍ରାରେ ଜଳମଗ୍ନ ହୋଇଥିଲା । ୧୫୧୩ ଜଣ ଯାତ୍ରୀ ପ୍ରାଣ ହରାଇଥିଲେ । ଟାଇଟାନିକ୍‌ର ସମାଧି-ମାନ ବର୍ତ୍ତମାନ ବୈଜ୍ଞାନିକମାନେ ଜାହାଜ ଉଦ୍ଧାରକୁ ସକ୍ଷମ ହୋଇଛନ୍ତି । ସେଥିରୁ ଅମୂଲ୍ୟ ଜିନିଷଗୁଡ଼ିକର ଉଦ୍ଧାର ହୋଇଛି ।

### ଗଣ୍ଡାର ଦୀର୍ଘଜୀବୀ ହେଉ !

ଗଣ୍ଡାର ବର୍ତ୍ତମାନ ଲୁପ୍ତପ୍ରାୟ ଜୀବ । ଇଂଲଣ୍ଡର ଦୁଇଜଣ ବାଳକ, ନୀଲ୍ ବ୍ରେଥ୍‌ୱେଟ ଓ ଜନ୍ ଏଡ଼ୱାର୍ଡସ୍ ଲଣ୍ଡନରୁ ସାଇକେଲ୍ ଯୋଗେ ସ୍ପେନରେ ପର୍ଯ୍ୟନ୍ତ ଯାଉଛନ୍ତି । ନରୱେ, ସୁଇଡେନ୍, ଡେନ୍ମାର୍କ, ଜର୍ମାନୀ ଇତ୍ୟାଦି ଭିତର ଦେଇ ଗଲାବେଳେ ସେମାନେ ଲୋକଙ୍କଠୁଁ ସାହାଯ୍ୟ ସଂଗ୍ରହ କରି ଗଣ୍ଡାର ରକ୍ଷା ସଂସ୍ଥାକୁ ଦେଉଛନ୍ତି ।





### ସୂର୍ଯ୍ୟଙ୍କ ଅପୂର୍ବ ପୋଷାକ

ନିକଟରେ ଭଦୋଦରର ଥିବା ସ୍କୋଲ୍ କାର ଶଙ୍କର କଲେଜର ଅଧ୍ୟାପକ ଶ୍ୟାମ ଶାସ୍ତ୍ରୀ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଇନ୍ଦ୍ରଧନୁ ରଙ୍ଗର ଏକ ବଳୟ ଦେଖିପାରିଥିଲେ । ତିନିଶହ ବର୍ଷ ତଳେ ଇଂରେଜ ବୈଜ୍ଞାନିକମାନେ ଏହା ପ୍ରଥମେ ଲକ୍ଷ୍ୟ କରିଥିଲେ । ଭୂପୃଷ୍ଠଠୁଁ ୧୫ କି.ମି. ଉର୍ଦ୍ଧ୍ୱରେ ଧୂଳି ଧୂଳି କଣିକା ଉପରେ ଆଲୋକର ଖେଳ ଯୋଗୁଁ ଥରେ ଥରେ ଏ ବଳୟ ଦେଖା ଦେଇଥାଏ ।

### ସାବାସ୍ ପିଲାଏଁ !

ବ୍ରିଟେନ୍‌ରେ ହୋଇଥିବା ଗୋଟିଏ ସମୀକ୍ଷାରୁ ଜଣାଯାଏ ଆଜିର ପିଲାଏଁ ଦଶବର୍ଷ ବୟସରେ ଯେତିକି ଚତୁର, ସେମାନଙ୍କ ଜେଜେ ବାପାମାନେ ସେମାନଙ୍କ ଦଶବର୍ଷ ବୟସ ବେଳେ ସେତେ ଚତୁର ନଥିଲେ । ଅବଶ୍ୟ ବୟସ ବଢ଼ିବା ପରେ ଏ ଚତୁରତା ରହେ କି ନା, ତାହା ଭିନ୍ନ କଥା ।



# କଳାବତୀ

କଳାବତୀ ଥିଲେ କାଶୀର ରାଜକନ୍ୟା । ସେ ଯେତେବେଳେ ଶିଶୁ, ସେତେବେଳେ ବି ସେ ଶିବଙ୍କୁ ଧ୍ୟାନ କରୁଥିଲେ । ଋଷି ଦୁର୍ବାଶା ତାଙ୍କୁ ଧ୍ୟାନ ଓ ପ୍ରାର୍ଥନା କିପରି କରିବାକୁ ହୁଏ ତାହା ଶିଖାଇଥିଲେ । ସେ ଶିଖାଇଥିଲେ ଅନେକ ଗୁଡ଼ିଏ ଶକ୍ତିଶାଳୀ ମନ୍ତ୍ର ।

ମଥୁରାର ରାଜକୁମାର ଦଶାର୍ହଙ୍କ ସହ କଳାବତୀଙ୍କ ବିବାହ ହୋଇଥିଲା । ପ୍ରଥମେ ପ୍ରଥମେ ମନେ ହେଉଥିଲା, ସେ ରାଜକୁମାର ଧର୍ମପରାୟଣ ଓ ନୀତିବାଦୀ । କିନ୍ତୁ ପରେ ରାଜା ହେବା ପରେ ଦେଖାଗଲା, ସେ ନାନା ବିଳାସ ବ୍ୟସନରେ ମାତି ରହିଛନ୍ତି । ନିଜର ବାସନା ତୃପ୍ତି ଛଡ଼ା ତାଙ୍କର ଅନ୍ୟ କିଛିରେ ଆଗ୍ରହ ନଥିଲା ।

କଳାବତୀ ଯେତେବେଳେ ଏକଥା ବୁଝିଲେ, ସେତେବେଳେ ସେ ବଡ଼ ଦୁଃଖ ପାଇଲେ । ରାଜା ବି କଳାବତୀଙ୍କୁ ଏଡ଼ାଇ ଚାଲୁଥାନ୍ତି ।

କିନ୍ତୁ କଳାବତୀ ତାଙ୍କୁ ପତନରୁ ରକ୍ଷା କରିବା ନିମନ୍ତେ ବଦ୍ଧପରିକର ହେଲେ । ସେ ପରେ ତାଙ୍କୁ ଗର୍ଗ ଋଷିଙ୍କ ଆଶ୍ରମକୁ ନେଇଗଲେ । ସେଠାକାର ପବିତ୍ର ବାତାବରଣରେ ରାଜା ବୁଝିଲେ ଯେ ବାସନା ଚରିତାର୍ଥ କରିବାରୁ ଯେଉଁ ଆମୋଦ ମିଳେ, ତାହା ତୁଳନାରେ ସତ୍‌ମାର୍ଗରୁ ମିଳୁଥିବା ଆନନ୍ଦର ମୂଲ୍ୟ ବହୁତ ଅଧିକ ।

ଗର୍ଗ ଋଷିଙ୍କ ନିର୍ଦ୍ଦେଶରେ ଗୋଟିଏ ବିଶେଷ ମୁହୂର୍ତ୍ତରେ ରାଜା କାଳିନ୍ଦୀ ନଦୀରେ ବୁଡ଼ ଦେଲେ । ତାଙ୍କର ପୂର୍ବ ପାପ ଗୋଟିଏ କାଉର ରୂପ ନେଇ ତାଙ୍କୁ ଛାଡ଼ି ଉଡ଼ି ଚାଲିଗଲା ।





# ରାଜା ଓ ବିଦ୍ୱାନ୍

ଚନ୍ଦ୍ରଗିରିର ରାଜା ମୃତ୍ୟୁଶଯ୍ୟାରେ ଶାୟିତ ଥିବା ଅବସ୍ଥାରେ ମନ୍ତ୍ରୀ ଓ ସଭାସଦ୍‌ମାନଙ୍କୁ ଡାକି କହିଲେ, "ମୋର ସନ୍ତାନସନ୍ତତି ନାହାନ୍ତି । ମୋର ମୃତ୍ୟୁ ପରେ ମୋର ଜ୍ଞାତି କୁଟୁମ୍ବଙ୍କ ଭିତରୁ ବୋଧହୁଏ ଆପଣମାନେ ଜଣେ ଯୁବକକୁ ରାଜଗାଦିରେ ବସାଇବେ । ସେମାନଙ୍କ ଭିତରେ ସେଭଳି ଯୋଗ୍ୟ ଯୁବକ କେହି ଅଛନ୍ତି ବୋଲି ମୋର ମନେ ହୁଏନା । ଖାଲି ମୋର ଆତ୍ମୀୟ ବୋଲି ଯୋଗ୍ୟତା ନଥାଇ ମଧ୍ୟ ଜଣେ ରାଜା ହେବ, ଏକଥା ମୁଁ ଚାହେଁନା ।"

"ତେବେ ଆମର କର୍ତ୍ତବ୍ୟ କ'ଣ ହେବ ?" ମନ୍ତ୍ରୀ ପଚାରିଲେ ।

"ଯିଏ ସବୁ ପ୍ରକାର ସାମରିକ ବିଦ୍ୟାରେ ପାରଙ୍ଗମ ହୋଇଥିବ, ସେହିଭଳି ଜଣେ ବ୍ୟକ୍ତି ରାଜା ହେଉ । ତାହାହେଲେ ରାଜ୍ୟ ସୁରକ୍ଷିତ ରହିବ ।" ରାଜା ଏହା କହି ପ୍ରାଣତ୍ୟାଗ କଲେ ।

ମନ୍ତ୍ରୀମାନେ ସ୍ଥିର କଲେ ଯେ ଗୋଟିଏ ପ୍ରତିଯୋଗିତା କରି କିଏ ସବୁ ପ୍ରକାର ସାମରିକ ବିଦ୍ୟାରେ ଧୁରନ୍ଧର, ତାହା ସ୍ଥିର କରିବେ । ପ୍ରଥମେ ରାଜ୍ୟର ପ୍ରତି ତାଲୁକାରେ ପ୍ରତିଯୋଗିତା ହେଲା । ସେ ସବୁରେ ଯେଉଁମାନେ ଉତ୍ତୀର୍ଣ୍ଣ ହେଲେ, ସେମାନେ ରାଜ୍ୟର ରାଜଧାନୀକୁ ଆସିଲେ । ସେଠାରେ ଦରବାରର ଅମାତ୍ୟ, ମନ୍ତ୍ରୀ ତଥା ସେନାପତିଙ୍କ ଆଗରେ ସେମାନଙ୍କ ଭିତରେ ପ୍ରତିଯୋଗିତା ହେଲା । ବୀରେନ୍ଦ୍ର ନାମକ ଜଣେ ଯୁବକ ସେଥିରେ ଶ୍ରେଷ୍ଠ ବିବେଚିତ ହେଲେ । ରାଜା ବୀରେନ୍ଦ୍ର ବୀରଭଦ୍ରବର୍ମା ନାମ ଗ୍ରହଣ କରି ସେ ସିଂହାସନ ଆରୋହଣ କଲେ । ଯେ ପର୍ଯ୍ୟନ୍ତ ବୀରେନ୍ଦ୍ର ରାଜା ହୋଇ ନଥିଲେ, ସେ ପର୍ଯ୍ୟନ୍ତ ସେଥିପାଇଁ

ସ୍ୱଦେଶେ ପୂଜ୍ୟତେ ରାଜନ୍, ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ




ତାଙ୍କର ଯୋଗ୍ୟତା ଅଛି କି ନାହିଁ ସେକଥା ବିଚାର କରିବାର ଦାୟିତ୍ୱ ପାତ୍ର ମିତ୍ର ମନ୍ତ୍ରୀ ସେନାପତିଙ୍କ ଉପରେ ନ୍ୟସ୍ତ ଥିଲା । ଥରେ ତାଙ୍କର ଅଭିଷେକ ହୋଇ ସାରିବା ପରେ ଅବସ୍ଥା ବଦଳିଗଲା ।

ରାଜ-ଦରବାରରେ ଥିଲେ ବିଶ୍ୱେଶ୍ୱର ଭଟ୍ଟ ନାମକ ଜଣେ ବିଶିଷ୍ଟ ପଣ୍ଡିତ । ନୂଆ ରାଜା ଯେଉଁଦିନ ପ୍ରଥମ ଥର ପାଇଁ ଦରବାରକୁ ଆସିଲେ, ସେଦିନ ପରମ୍ପରା ଅନୁସାରେ ପଣ୍ଡିତ ବିଶ୍ୱେଶ୍ୱର ଭଟ୍ଟ ତାଙ୍କର ସ୍ତୁତିଗାନ କରି କହିଲେ, "ହେ ବୀରେନ୍ଦ୍ର, ବୀରଭଦ୍ର ! ଆପଣ ବୀରତ୍ୱରେ ଅର୍ଜୁନଙ୍କ ଭଳି, ସାହସରେ ହନୁମାନଙ୍କ ଭଳି । ଆପଣଙ୍କର ମଙ୍ଗଳ ହେଉ !"

ରାଜା ବୀରେନ୍ଦ୍ର ହସିଦେଲେ । ପଣ୍ଡିତ ଭଟ୍ଟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ମହିମା ! ଆପଣଙ୍କର ହସିବାର ହେତୁ ମୁଁ କିଛି ଜାଣିପାରେଁ କି ?"

ରାଜା କହିଲେ, "ହେତୁ କହିବି । କିନ୍ତୁ ପ୍ରଥମେ ତୁମେ କିପରି ଏ ରାଜସଭାରେ ପଣ୍ଡିତ ଆସନ ପାଇଲ, ସେକଥା କୁହ !"

ପଣ୍ଡିତେ କହିଲେ, "ଗୋଟିଏ ପଣ୍ଡିତ ପରିବାରରେ ମୋର ଜନ୍ମ । ମୋ ପିତା ତଥା ପିତାମହ ଜୟପୁର ରାଜସଭାରେ ପଣ୍ଡିତ ଥିଲେ । ମୋତେ ବାରବର୍ଷ ବୟସ ହୋଇଥିଲା, ମୋ ପିତା ପୁରୀର ଗୋଟିଏ ଶାସ୍ତ୍ର-ବିଦ୍ୟାଳୟକୁ ପଠାଇଦେଲେ । ସେଠାରେ ମୁଁ କୋଡ଼ିଏ ବର୍ଷ ଶିକ୍ଷାଲାଭ କରିବା ପରେ ମୋତେ ମୋ ଗୁରୁଦେବ ଏଠାକାର ପୂର୍ବତନ ରାଜାଙ୍କ ନିକଟକୁ ପଠାଇଦେଲେ । ସେତେ-ବେଳେ ଏ ଦରବାରରେ ଦୁଇଜଣ ବିଶିଷ୍ଟ ବିଦ୍ୱାନ ଥିଲେ । ସେ ଦୁହେଁ ମୋତେ ପରୀକ୍ଷା କଲେ । ତା'ପରେ ରାଜା ମୋ ଉପରେ ସନ୍ତୁଷ୍ଟ ହୋଇ ମୋତେ ସଭା ପଣ୍ଡିତର ମର୍ଯ୍ୟାଦା ଦେଲେ ।"

ନୂଆ ରାଜା ପୁଣି ହସିଲେ ଓ କହିଲେ, "ମୁଁ ସେହିକଥା ପାଇଁ ହସୁଥିଲି । ତୁମେ କୋଡ଼ିଏ ବର୍ଷ ସାଧନା କରି ଏ ପଦ ପାଇଛ । ମୁଁ ମାତ୍ର ପାଞ୍ଚବର୍ଷ କୁସ୍ତି ଓ ସାମରିକ ବିଦ୍ୟା ଶିକ୍ଷା ଗଲା ହେଉ । ପାଞ୍ଚବର୍ଷ ତଳେ ଆମ

ଗାଁକୁ କଳିଙ୍ଗରୁ ଜଣେ ବିଖ୍ୟାତ କୁସ୍ତିବିଦ୍ ଆସିଥିଲେ । ସେ ସମସ୍ତଙ୍କୁ ହରାଇଦେଲେ । କୁସ୍ତି ଶିଖିବାରେ ମୋର ଆଗ୍ରହ ଦେଖି ମୋତେ ତାଙ୍କ ଶିଷ୍ୟ କରି ନେଇଗଲେ । ଦୁଇବର୍ଷ କୁସ୍ତି ଶିଖିବା ପରେ ଆଉ ତିନିବର୍ଷ ଜଣେ ଅବସରପ୍ରାପ୍ତ ସେନାପତିଙ୍କଠାରୁ ଅସ୍ତ୍ରଶସ୍ତ୍ର ବିଦ୍ୟା ଶିଖିଲି । ମୋର ସର୍ବମୋଟ ସାଧନା ପାଞ୍ଚ ବର୍ଷ । ତମର କୋଡ଼ିଏ ବର୍ଷ । ତଥାପି ତମେ ମୋର ପ୍ରଶସ୍ତି ଗାନ କରୁଛ । ଏହା ବିଡ଼ମ୍ବନା ନୁହେଁ କି ?"



ପଣ୍ଡିତ ଗମ୍ଭୀର ହୋଇ କହିଲେ, "ମହିମା! ମୋର ଧୃଷ୍ଟତା ମାର୍ଜନା କରିବେ । ଜଣେ ଯେତେବେଳେ ରାଜାଙ୍କୁ ସମ୍ବୋଧନ କରେ, ସେତେବେଳେ ତା' ଆଗରେ କେବଳ ଜଣେ ବ୍ୟକ୍ତି ନଥାନ୍ତି । ରାଜପଦର ମହାନ୍ ପରମ୍ପରା ରହିଛି । ରାଜା କହିବା ମାନେ ଆମେ ରାଜା ଭରତ, ରାଜା ରାମଚନ୍ଦ୍ରଙ୍କଠୁଁ ଆରମ୍ଭ କରି ରାଜା ହରିଶ୍ଚନ୍ଦ୍ର, ରାଜା ଶିବି— ଏ ସମସ୍ତଙ୍କ ସ୍ମୃତିକୁ ମନରେ ବହନ କରିଥାଉଁ । ତା'ଛଡ଼ା ରାଜାଙ୍କ କାମ ପ୍ରଜାଙ୍କୁ ରକ୍ଷା କରିବା । ସୁରକ୍ଷିତ ରହିଥିଲେ ସିନା ଜଣେ ପାଣ୍ଡିତ୍ୟ ଅର୍ଜନ କରିବ ! ତେଣୁ ପାଣ୍ଡିତ୍ୟ ଅର୍ଜନ କାଠିକର ହେଲେ ବି ସ୍ଥୂଳ ଓ ବାସ୍ତବ କ୍ଷେତ୍ରରେ ରାଜାଙ୍କ ପାଖରେ ପଣ୍ଡିତଙ୍କୁ ନମ୍ର ରହିବାକୁ ପଡ଼େ । କିନ୍ତୁ ଏକଥା ଠିକ୍ ଯେ ରାଜାଙ୍କୁ ତାଙ୍କର ପ୍ରଜାଏଁ ମାନ୍ୟ କରନ୍ତି । ପଣ୍ଡିତଙ୍କୁ ସମସ୍ତେ ମାନ୍ୟ କରନ୍ତି ।"

ସଭାରେ ସମସ୍ତେ ପଣ୍ଡିତଙ୍କ ଯୁକ୍ତିକୁ ସମର୍ଥନ କରୁଥିଲେ ବୋଲି ସେମାନଙ୍କ ଢଙ୍ଗଢାଙ୍ଗରୁ ଜଣାପଡ଼ିଯାଉଥିଲା । ନୂଆ ରାଜା ସେଥିରେ ଅସ୍ୱସ୍ତି ଅନୁଭବ କଲେ । ସେ କହିଲେ, "ପଣ୍ଡିତେ ! ତମେ ଯେ ମୋତେ ଅର୍ଜୁନ ଓ ବିକ୍ରମାଦିତ୍ୟଙ୍କ ସହ ତୁଳନା କଲ, ଏହା ମିଥ୍ୟାଗୃର ନୁହେଁ ?"

"ମହିମା ! ଏହା ମିଥ୍ୟଗୃର ନୁହେଁ । ଆମେ ଆଶାକରୁଁ ଆପଣ ସେପରି ହେବେ ବା ହେବାକୁ ଚେଷ୍ଟା କରିବେ । ପ୍ରତି ମଣିଷ ଭିତରେ ସେ ଯାହା, ତାହାଠୁଁ ବହୁଗୁଣ



ଅଧିକ ମହତ୍ ହେବାର ଶାସ୍ତ୍ର ଲେଖା ରହିଛି । ତେଣୁ ସେପରି କୁହାଯାଏ । ଏହା ଗୋଟିଏ ପରମ୍ପରା । ରାଜା ଏଥିରୁ ବୁଝିବା ଉଚିତ ଆମେ ତାଙ୍କଠାରୁ କ'ଣ ଆଶା କରୁଛୁ ।" ପଣ୍ଡିତ ଭଟ୍ଟ କହିଲେ ।

ଏଥର ସଭାସଦ୍‌ମାନେ କରତାଳି ଦେଇ ଭଟ୍ଟଙ୍କୁ ସମର୍ଥନ ଜଣାଇଲେ । ଫଳରେ ନୂଆ ରାଜା ଅପମାନିତ ବୋଧ କଲେ ଓ ରାଗିଯାଇ କହିଲେ, "ପଣ୍ଡିତେ ! ତମେ ପଣ୍ଡିତର ଆସନ ରାଜାଙ୍କ ଆସନଠାରୁ ବଡ଼ ବୋଲି ବୁଝାଇବାକୁ ଚେଷ୍ଟା କରୁଛ । ତମକୁ ମାସଟିଏ ସମୟ ଦେଲି । ଏକଥା ପ୍ରମାଣ କର, ନହେଲେ ଚିରଦିନ ପାଇଁ ଏ ରାଜ୍ୟ ଛାଡ଼ି ଯାଅ । ଏ ମାସକ ଭିତରେ ଏ ରାଜସଭାକୁ ଆସିବା ଦରକାର ନାହିଁ ।"

ପଣ୍ଡିତେ ଆଉ କ'ଣ କହିବାକୁ ଯାଉଥିଲେ, କିନ୍ତୁ ରାଜା କହିଲେ, "ନା, ନା, ମୁଁ ଆଉ କିଛି ଶୁଣିବି ନାହିଁ । ତମେ ଯଦି ତମ କଥା ପ୍ରମାଣ କରିଦେବ, ତେବେ ମୁଁ ଯେ ଖାଲି ତମକୁ ବିଶେଷ ସମ୍ମାନ ଦେବି, ସେତିକି ନୁହେଁ, ତମ ସବାରୀ ବହନ କରିବି ।"

ପଣ୍ଡିତେ ଚାଲିଗଲେ ।

ପନ୍ଦର କୋଡ଼ିଏ ଦିନ ଗଲା । ହଠାତ୍ ଦିନେ ଭଞ୍ଜଗଡ଼ ରାଜ୍ୟରୁ ଆସି ପହଞ୍ଚିଲେ ଜଣେ ପଣ୍ଡିତ ଓ ଜଣେ ରାଜଦୂତ । ରାଜଦୂତ କହିଲେ, "ଭଞ୍ଜଗଡ଼ ରାଜସଭାର ଏ ପଣ୍ଡିତଙ୍କୁ ଯଦି ଆପଣଙ୍କ ଦରବାରର କୌଣସି ପଣ୍ଡିତ ଯୁକ୍ତିତର୍କରେ ପରାସ୍ତ କରିପାରିବେ, ତେବେ ଆପଣଙ୍କ ରାଜ୍ୟର ସୀମାନ୍ତକୁ ଲାଗିଥିବା ଭଞ୍ଜଗଡ଼ର ଷଗୃଶଖଣ୍ଡି ଗ୍ରାମ ଆମ ରାଜା ଆପଣଙ୍କୁ ଦେଇଦେବେ । ଯଦି ଆମ ପଣ୍ଡିତ ଆପଣଙ୍କର ସବୁ ପଣ୍ଡିତଙ୍କୁ ପରାସ୍ତ କରିଦେବେ, ତେବେ ଆପଣଙ୍କ ରାଜ୍ୟ ଆମ ରାଜା ନେଇଯିବେ ।"

"ଯଦି ମୁଁ ଏ ସର୍ତ୍ତରେ ରାଜି ନ ହୁଏଁ !" ନୂଆ ରାଜା ପଚାରିଲେ ।

"ରାଜି ନହେଲେ ବି ହୁଏତ ଆମ ରାଜା ଆପଣଙ୍କ ରାଜ୍ୟ ଦଖଲ କରିନେବେ । ଆପଣ ତ ଜାଣନ୍ତି, ଆମ ରାଜାଙ୍କ ସାମରିକ ଶକ୍ତି

ଆପଣଙ୍କଠୁଁ ଗୁରୁ ପାଞ୍ଚଗୁଣ ଅଧିକ!" ଦୂତ କହିଲେ ।

ନୂଆ ରାଜା ବୀରେନ୍ଦ୍ର ଦେଖିଲେ, ଅନ୍ତତଃ ସର୍ତ୍ତ ଗ୍ରହଣ କରିନେଲେ ପଚିଶ ଖଣ୍ଡି ଗ୍ରାମ ପାଇବାର ଆଶା ଅଛି । ସେ ତେଣୁ ତାଙ୍କ ସଭା ପଣ୍ଡିତମାନଙ୍କୁ ଭଞ୍ଜଗଡ଼ର ପଣ୍ଡିତଙ୍କ ସହ ଯୁକ୍ତି କରିବାକୁ କହିଲେ । ଯୁକ୍ତିତର୍କ ଆରମ୍ଭ ହେଲା । କିନ୍ତୁ କେହି ସେ ପଣ୍ଡିତଙ୍କୁ ହରାଇ ପାରିଲେ ନାହିଁ ।

ରାଜା ହେବା ପରେ ବେଶ୍ ଖୁସିରେ ରହିଥିବା ବୀରେନ୍ଦ୍ର ହଠାତ୍ ଅସହାୟ ଅନୁଭବ କଲେ । ବର୍ତ୍ତମାନ ଉପାୟ କ'ଣ ? ଭଞ୍ଜଗଡ଼ର ରାଜା ତାଙ୍କ ତୁଳନାରେ ବହୁତ ଶକ୍ତିଶାଳୀ; ସେତିକି ନୁହେଁ, ସେ ଖିଆଲ୍ । ସେ ଚନ୍ଦ୍ରଗିରି ରାଜ୍ୟକୁ ଅକ୍ଳେଶରେ ଦଖଲ କରିନେଇ ପାରିବେ, ସନ୍ଦେହ ନାହିଁ ।

ମନ୍ତ୍ରୀ ଗୋପନରେ ରାଜାଙ୍କୁ କହିଲେ, "ଆପଣ ଆଉ ଦ୍ୱିଧା ନକରି ପଣ୍ଡିତ ଭଟ୍ଟଙ୍କୁ ଡାକନ୍ତୁ ।" ରାଜା ଅଗତ୍ୟା ପଣ୍ଡିତ ଭଟ୍ଟଙ୍କୁ ନିମନ୍ତ୍ରଣ କଲେ । ଭଟ୍ଟ ଭଞ୍ଜଗଡ଼ ପଣ୍ଡିତଙ୍କୁ ହରାଇ ଦେଲେ । ରାଜା ଉଠିଯାଇ ତାଙ୍କୁ ପ୍ରଣାମ କରି କହିଲେ, "ପଣ୍ଡିତେ! ଆଜି ଆପଣ ପ୍ରମାଣ କରିଦେଲେ ଯେ ପଣ୍ଡିତ ରାଜାଠୁଁ ବଡ଼ । ମୁଁ ଆପଣଙ୍କୁ ଆଜୀବନ ଗୁରୁ ବୋଲି ମାନିବି ଓ ଆପଣଙ୍କ ସବାରି ବହନ କରିବି ।"

"ମଣିମା, ସବାରି ବହନ କରିବା ଅନାବଶ୍ୟକ । ମୁଁ ଯେ ଆଜି ମୋ କଥା ପ୍ରମାଣ କରି ପାରିଲି, ତାହା ଦୈବାତ୍ । ଏ ଦୂତ ଓ ଏ ପଣ୍ଡିତ ଆସି ମାସକ ଭିତରେ ପହଞ୍ଚିଯାଇ ନଥିଲେ ମୋତେ ଏ ରାଜ୍ୟ ଛାଡି ଯିବାକୁ ପଡ଼ିଥାନ୍ତା । ଆପଣ ମୋର ସବାରି ବହନ ନକରି ଆପଣଙ୍କ ଦୃଷ୍ଟିକୋଣ ବଦଳାଇବେ, ଏହାହିଁ ମୋର ଅନୁରୋଧ ।" ପଣ୍ଡିତ ଭଟ୍ଟ କହିଲେ ।

ରାଜା ଏକଥା ସ୍ୱୀକାର କଲେ ।





# ଦୁଇ ବିଦ୍ୟାର୍ଥୀ

ଉଜ୍ଜୟିନୀ ନଗରୀଠୁଁ ଅଳ୍ପ ଦୂରରେ ସିପ୍ରା ନଦୀ କୂଳରେ ଗୁରୁ ବ୍ରହ୍ମସାଗରଙ୍କର ଆଶ୍ରମ ଅବସ୍ଥିତ ଥିଲା । ସେ ବହୁ ବିଦ୍ୟାରେ ଏଭଳି ଜ୍ଞାନୀ ଥିଲେ ଯେ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିବା ନିମନ୍ତେ ଅନେକ ରାଜ୍ୟରୁ ଆଗ୍ରହୀ ଯୁବକମାନେ ଆସୁଥିଲେ ।

ଗୁରୁଙ୍କ ଆଶ୍ରମରେ ଆଉ ସ୍ଥାନ ନଥିଲା । ବହୁ ସଂଖ୍ୟକ ଛାତ୍ର ଆଶ୍ରମରେ ରହିଲେ ସମସ୍ତଙ୍କ ପ୍ରତି ଯଥାର୍ଥ ଧ୍ୟାନ ଦେବା ସମ୍ଭବ ହେବ ନାହିଁ ବୋଲି ଗୁରୁ ଆଉ ଅଧିକ ଶିଷ୍ୟ ଗ୍ରହଣ କରିବାକୁ ପସନ୍ଦ କରୁ ନଥିଲେ । ତଥାପି ବିଦ୍ୟାର୍ଥୀମାନେ ଆସି ପହଞ୍ଚୁଥିଲେ । ସେମାନଙ୍କ ଆଗରେ ଗୁରୁ ଅଦ୍ଭୁତ ସର୍ତ୍ତ ରଖୁଥିଲେ । କାହାକୁ କହୁଥିଲେ, "ମୋ ଶିଷ୍ୟ ହେବାକୁ ହେଲେ ନଦୀର ଧାରା ବଦଳାଇବାକୁ ପଡ଼ିବ । ଯଦି ତାହା କରି ପାରିବ, ତେବେ ତମକୁ ଗ୍ରହଣ କରିବା ।" ଆଉ କାହାକୁ କହୁଥିଲେ, "ଏ ବଣ ଭିତରେ ଗୋଟିଏ ସୁନା ଖଣି ଅଛି । ପ୍ରଥମେ ତାହା ବାହାର କର । ତେଣିକି ମୋ ଶିଷ୍ୟ ହେବ ।"

ଏସବୁ ସର୍ତ୍ତ ଶୁଣି ବିଦ୍ୟାର୍ଥୀମାନେ ଫେରି ଯାଉଥିଲେ ।

ଥରେ ସୁଭଦ୍ର ନାମକ ନଗରୀରୁ ଦୁଇଜଣ ପରିବ୍ରାଜକ ଆସି ସେଠାରେ ପହଞ୍ଚିଲେ । ଦୁଇଜଣଙ୍କ ଭିତରୁ ଜଣଙ୍କ ନାମ ଆନନ୍ଦ, ଅନ୍ୟ ଜଣଙ୍କର ନାମ ବିଦ୍ୟାଶୀଳ । ଆନନ୍ଦ ଜଣେ ପଣ୍ଡିତ ଭାବରେ ସୁପରିଚିତ ଥିଲେ । ବିଦ୍ୟାଶୀଳ ତାଙ୍କର ସହଯାତ୍ରୀ ହୋଇଥିଲେ ତାଙ୍କଠୁଁ ନାନା କଥା ଶିଖିବେ ବୋଲି ।

ଆନନ୍ଦ ଓ ବିଦ୍ୟାଶୀଳ ଆସି ବ୍ରହ୍ମସାଗରଙ୍କ ଆଶ୍ରମର ଅତିଥିଶାଳାରେ ରହିଲେ । ଦୁଇଦିନ

ପରେ ଆନନ୍ଦ ପ୍ରଜ୍ଞାସାଗରଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାକୁ ସ୍ଥିର କରି ତାଙ୍କୁ ସେକଥା କହିଲେ ।

ପ୍ରଜ୍ଞାସାଗର କହିଲେ, "ବର୍ତ୍ତମାନ ମୁଁ ସିଦ୍ଧାନ୍ତ କରିଛି, ଯିଏ ସେ ପଥୁରିଆ ସ୍ଥାନରେ ଗୋଟାଏ କୂଅ ଖୋଳିବ, ସେ ମୋ ଶିଷ୍ୟ ହେବ ।"

ଆନନ୍ଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ମହାଶୟ, ଏହା କପରି କଥା ? ମୁଁ ନାଳନ୍ଦା ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବା ପରେ ସେଇଠାରେ ଅଧ୍ୟାପନା ମଧ୍ୟ କରିଛି । ମୋ ଛାତ୍ରମାନେ ସୁନାମ ଅର୍ଜନ କରି ସାରିଲେଣି— ମୋ ନିଜ କଥା ବା ମୁଁ କହିବି କଣ! ଆପଣଙ୍କଠାରୁ କେତେକ ବିଶେଷ ବିଷୟରେ ଜ୍ଞାନ ଅର୍ଜନ କରିବାକୁ ଚାହୁଁଥିଲି । ପଥର ଚଟାଣ ଉପରେ ସେଥିପାଇଁ କୂଅ ଖୋଳିବି କାହିଁକି ?"

"ତାହାହିଁ ମୋର ସର୍ତ୍ତ ।" ପ୍ରଜ୍ଞାସାଗର ଏହା କହି ଅନ୍ୟ କାମରେ ମନ ଦେଲେ ।

ଆନନ୍ଦ ଅତିଥିଶାଳାକୁ ଆସି ବିରକ୍ତ ହୋଇ ବିଦ୍ୟାଶୀଳଙ୍କୁ କହିଲେ, "କଥା କ'ଣ ମୁଁ ଜାଣେ । ପ୍ରଜ୍ଞାସାଗରଙ୍କ ଭୟ ହେଉଛି, ମୁଁ ଅଧିକ ବିଦ୍ୟାର୍ଜନ କରି ତାଙ୍କଠୁ ଅଧିକ ଜଣାଶୁଣା ହୋଇଯିବି ! ସେଥିପାଇଁ ସେ ଏଭଳି ଅଦ୍ଭୁତ ସର୍ତ୍ତ ରଖିଲେ । ଚାଲ, ବାହୁଡ଼ି ହେବା ।"

ବିଦ୍ୟାଶୀଳ ଶାନ୍ତ କଣ୍ଠରେ କହିଲେ, "ମୁଁ ଭାବୁଛି, ମୁଁ ଏଠାରେ ରହି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବି ।"



"କ'ଣ କହୁଛ ତମେ! ପଥର ଚଟାଣ ଖୋଳି କୂଅ ବନାଇବ ?" ଆନନ୍ଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଚେଷ୍ଟା କରିବି ।" ବିଦ୍ୟାଶୀଳ କହିଲେ ।

ଆନନ୍ଦ ଏହା ଶୁଣି ଖାଲି ଏତିକି କହିଲେ, "ତମ ମୁଣ୍ଡ ଖରାପ ହେଲାଣି ।" ଏହା କହି ସେ ଚାଲିଗଲେ ।

ପାଞ୍ଚବର୍ଷ ପରେ ଆନନ୍ଦ କୌଣସି ସ୍ଥାନରୁ ପ୍ରତ୍ୟାବର୍ତ୍ତନ କରିବା ପଥରେ ସେ ଆଶ୍ରମରେ ରାତି ଯାପନ କରିବାକୁ ଆସି ଦେଖିଲେ, ବିଦ୍ୟାଶୀଳ ସେଠାରେ ତାଙ୍କ ଅଧ୍ୟୟନ ଶେଷ କରିବାକୁ ବସିଲେଣି । ଆନନ୍ଦଙ୍କୁ ଦେଖି ବିଦ୍ୟାଶୀଳ ଖୁସି ହେଲେ । ଆନନ୍ଦ ବିଦ୍ୟା-

ଶୀଳଙ୍କୁ ଏକାନ୍ତରେ ପଚାରିଲେ, "ତମେ କୂଅ ଖୋଳି ପାରିଲ ?"

"ନା, କୂଅ ଖୋଳିବା ଦରକାର ହୋଇ ନାହିଁ ।" ବିଦ୍ୟାଶୀଳ ହସି ହସି କହିଲେ ।

ଆନନ୍ଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତେବେ କ'ଣ ପ୍ରଜ୍ଞାସାଗର ତାଙ୍କର ସେ ସର୍ତ୍ତ ପ୍ରତ୍ୟାହାର କରିନେଲେ ?" ନା, ତମକୁ କୂଅ ଖୋଳିବା ପରିବର୍ତ୍ତେ ଅନ୍ୟ କୌଣସି କଠିନ କାର୍ଯ୍ୟ କରିବାକୁ ଦେଲେ ?

"ନା, କିନ୍ତୁ ପରଦିନ ଗୁରୁଙ୍କୁ ପ୍ରଣାମ କରି କୋଦାଳ ଧରି କୂଅ ଖୋଳିବା ନିମନ୍ତେ ଚେଷ୍ଟା କରିବାକୁ ବାହାରିଥିଲି । ଗୁରୁ କିଛି ସମୟ ପରେ ଆସି ମୋତେ ଦେଖିଲେ ଓ ପଚାରିଲେ, 'ତମେ କୂଅ ଖୋଳି ପାରିବ ବୋଲି ଭାବୁଛ ?' ମୁଁ କହିଲି, 'ଜାଣେ ନା । କିନ୍ତୁ ଆପଣ ଯେତେବେଳେ ଏ ସର୍ତ୍ତ ରଖିଛନ୍ତି, ସେତେବେଳେ ତାହାର ମୂଲ୍ୟ ଅସୀମ । ଆପଣ କାହିଁକି ଏ ସର୍ତ୍ତ ରଖିଛନ୍ତି, ତାହା ଆପଣ ଜାଣନ୍ତି । ମୁଁ ସର୍ତ୍ତ ପାଳନ ପାଇଁ ଚେଷ୍ଟା କରିବି । ପାରିଲେ ପାରିବି, ନହେଲେ ନାହିଁ ।' ଗୁରୁ ପଚାରିଲେ, 'କେତେଦିନ ଯାଏ ଏ ଚେଷ୍ଟା କରୁଥିବ ?' ମୁଁ କହିଲି, 'ଯେତେଦିନ ଯାଏ ପାରୁଥିବି ।' ଗୁରୁ ଏହା ପରେ ମୋତେ ଭିତରକୁ ନେଇଯାଇ କେତେକ ପ୍ରଶ୍ନ କଲେ ଓ ତା'ପରେ କହିଲେ; 'ତମ ବିଶ୍ୱାସ ଓ ଧୈର୍ଯ୍ୟ ତମକୁ ଉପଯୁକ୍ତ ଶିକ୍ଷାର୍ଥୀ କରୁଛି । କୂଅ ଖୋଳିବା ଦରକାର ନାହିଁ । ଆଜିଠାରୁ ତମେ ମୋର ଶିଷ୍ୟ ।' ପାଞ୍ଚବର୍ଷ ହୋଇଗଲାଣି । ଗୁରୁ ମୋତେ କହିଛନ୍ତି, ତାଙ୍କର ଜଣେ ଉତ୍ତୀର୍ଣ୍ଣ ଶିଷ୍ୟ ଭାବରେ ମୁଁ ରାଜଦରବାରକୁ ତାଙ୍କ ଚିଠି ନେଇଯିବି । ତେବେ ମୁଁ ତାଙ୍କ ଅନୁମତି ନେଇ ଏଠାରେ ଆଉ କିଛିଦିନ ରହି ଯୋଗାଭ୍ୟାସ କରୁଛି ।"

ଆନନ୍ଦ ସ୍ତବ୍ଧ ହୋଇ ରହିଲେ ।






# କନକ ପ୍ରତିମାର କାହାଣୀ

[ ୩ ]

[ଭୂମିକମ୍ପରେ କେତେଖଣ୍ଡ ଶିଳା ପଥର ଅପସରି ଯିବା ଫଳରେ ପର୍ବତର ମଧ୍ୟଦେଶରେ ଅତୀତର ଜଣେ ଶିଳ୍ପୀ-ରାଜକୁମାର ନିର୍ମାଣ କରିଥିବା ସୁବର୍ଣ୍ଣ ପ୍ରତିମା ଦୃଷ୍ଟିଗୋଚର ହେଲା । ତାକୁ ଜୀବନ୍ୟାସ ଦେବାର ରହସ୍ୟ ଜାଣିବା ନିମନ୍ତେ ରଜୁ ପ୍ରପାତ ପାରି ହୋଇ ଚାଲିଯିବା ପୂର୍ବରୁ ତା'ର ସୁରକ୍ଷା ଦାୟିତ୍ୱ ଦେବା ପାଇଁ ସେ ରାଜ୍ୟର ମୂଢ଼ ରାଜାକୁ ଡାକିନେଇ ଆସିଲା । ପ୍ରଥମେ ରାଜା କିଛି ଦେଖିପାରିଲେ ନାହିଁ । କିନ୍ତୁ ରଜୁକୁ ଛୁଇଁବା ପରେ ପ୍ରତିମା ଦେଖିଲେ ଓ ସେ ଦର୍ପଣରେ ନିଜେ ସୁନ୍ଦର ଦିଶିଲେ । ତା'ପରେ...]

ଦର୍ପଣ ଆଣିବା ପାଇଁ ରାଜାଙ୍କ ଆଦେଶ ପ୍ରତି ଅମାତ୍ୟମାନେ କର୍ଣ୍ଣପାତ କଲେ ନାହିଁ । ସେମାନେ ବିମୁଗ୍ଧ ନୟନରେ ସେ ପ୍ରତିମା ଆଡ଼େ ଅନାଇ ରହିଥିଲେ ।

"ମହାରାଜ! ଖାଲି ଆପଣ ନୁହନ୍ତି, ଆପଣଙ୍କର ଏ ଅନୁଗତ ଅମାତ୍ୟମାନେ ବି ଖୁବ୍ ସୁନ୍ଦର ଦିଶୁଛନ୍ତି ।" ରଜୁ କହିଲା । ରାଜା ଗମ୍ଭୀର ହୋଇଗଲେ । ସେହି ପରିତ୍ୟକ୍ତ ନଗରର ଅର୍ଦ୍ଧ ଧ୍ୱସ୍ତ ସ୍ତମ୍ଭଗୁଡ଼ିକ ତଳ ନିଶ୍ଚଳ ଭାବରେ ଠିଆହୋଇ ରହିଥିବା ଅମାତ୍ୟବର୍ଗଙ୍କୁ ସେ ଥରେ ପର୍ଯ୍ୟବେକ୍ଷଣ କରିନେଲେ । ସେମାନେ ସେଯାଏ ଅପଲକ ଆଖିରେ ପ୍ରତିମା

ମନୋଜ ଦାସ



ଆଡ଼େ ଅନାଇଥାନ୍ତି । "କିନ୍ତୁ ଏମାନେ ସୁନ୍ଦର ଦିଶିବା ଦରକାର କଣ? ପ୍ରତିମା ଜୀବନ ପାଇଲେ ତାକୁ ବାହାହେବା ପାଇଁ ତ ମୁଁ!" ରାଜା ଅଭିଯୋଗ କଲାଭଳି କଣ୍ଠରେ କହିଲେ ।

"କ'ଣ କହିଲେ? ବାହା ହେବେ?" ରାଜୁ ଚମକି ପଡ଼ି ଭ୍ରୂ କୁଞ୍ଚନ କରି ପ୍ରଶ୍ନ କଲା ।

"ଆଉ?" ରାଜୁର ଅବାନ୍ତର ପ୍ରଶ୍ନରେ ରାଜା ଆଶ୍ଚର୍ଯ୍ୟ ହେଲେ । "ମୁଁ ବାହା ନହେବି ତ ସୁନ୍ଦରୀ ଜୀବନ୍ୟାସ ପାଇବ କିଆଁ? ତୋର କ'ଣ ସାଧାରଣ ଜ୍ଞାନ ନାହିଁ?"

"ମୋ ମୁଣ୍ଡକୁ ଏ ସମ୍ଭାବନା ଜୁଟି ନଥିଲା ।"

ରାଜା କରୁଣାପୂର୍ଣ୍ଣ ହସ ହସିଲେ ଓ କହିଲେ, "ଟୋକା! ସବୁ କଥା ଯଦି ତୋ ମୁଣ୍ଡକୁ ଜୁଟିବ, ତେବେ ଏ ମୁଣ୍ଡ ରହିଛି କାହିଁକି?" ରାଜା ନିଜ ମୁଣ୍ଡ ଦେଖାଇ ଦେଲେ ।

"ଚଣ୍ଡ ପ୍ରଚଣ୍ଡ ମହାରାଜ, ଆପଣଙ୍କ ଭଳି..."

କିନ୍ତୁ ରାଜା ରାଜୁକୁ କହିବାକୁ ଦେଲେ ନାହିଁ । "ଆରେ, ଆମ୍ଭେ ଜାଣୁ ତୁ କ'ଣ କହୁଛୁ । ଆମ୍ଭ ଭଳି ଯୋଗ୍ୟ ପାତ୍ର ନହେଲେ ଏଭଳି ସୁନ୍ଦରୀ କନ୍ୟାକୁ କିଏ ବରି ହେବ, ଏଇଆ ତ? ହାଃ ହାଃ ।"

"ମହାରାଜ, କହୁଥିଲି କି ଆପଣଙ୍କ ଭଳି ପ୍ରବୀଣ ବ୍ୟକ୍ତି ପକ୍ଷରେ ଏଭଳି ମୂର୍ଖଜନୋଚିତ କଥା ଶୋଭା ପାଉନାହିଁ ।" ରାଜୁ ଟିକିଏ ଉତ୍ତେଜିତ ସ୍ୱରରେ କହିଲା ।

"ଆମ୍ଭେ ମୂର୍ଖ? ତୋର ଏଡ଼େ ସାହସ?" ରାଜା ନିଜ ନାକ ମୋଡ଼ିଲେ ।

"ତୋର ଏଡ଼େ ସାହସ?" ଅମାତ୍ୟବର୍ଗ ବି ଏହା କହି ନିଜ ନିଜ ନାକ ମୋଡ଼ିଲେ, ଯଦିଓ ସେମାନଙ୍କ ଭିତରୁ ଦୁଇଜଣଙ୍କର ଜମାରୁ ନାକ ନଥିଲା ।

"ମୁହୂର୍ତ୍ତକ ଆଗରୁ ଆପଣ କେଡ଼େ ଉଜ୍ଜ୍ୱଳ ଦିଶୁଥିଲେ । ଯଦି ଆପଣ ଏ କନ୍ୟାକୁ ବରି ହେବାରେ କିଛି ଅସଙ୍ଗତ ନଥାନ୍ତା, ତେବେ ସେମିତି ଉଜ୍ଜ୍ୱଳ ଦିଶିଥାନ୍ତେ । କିନ୍ତୁ ମୁଣ୍ଡକୁ ଏ ଦୁଷ୍ଟ ବୁଦ୍ଧି ଆସିଯିବା ମାତ୍ରେ ପୁଣି ପୂର୍ବ ପରି ବୋକା ଦିଶିଲେଣି । ଆପଣ ଏକା ନୁହନ୍ତି, ସବୁ ଅମାତ୍ୟମାନେ ବି ।"

"ଆମ୍ଭେ ବୋକା ?" କ୍ରୋଧରେ ରାଜାଙ୍କ କଣ୍ଠ ରୁଦ୍ଧ ହୋଇଗଲା ।

"ଆମ୍ଭେ ବୋକା ?" ଅମାତ୍ୟମାନେ ବିକଟ କଣ୍ଠରେ ପ୍ରଶ୍ନ କଲେ ।

ତା'ପରେ ସମସ୍ତେ ଏକାବେଳେକେ ରଞ୍ଜୁ ଉପରକୁ ଡେଇଁ ପଡିଲେ । କିନ୍ତୁ ରଞ୍ଜୁ ଖସିଗଲା । ଗୋଟିଏ ଗୁଣ୍ଡୁଚି ଭଳି ସେ ଏକ ଶିଳାଖଣ୍ଡ ଉପରୁ ଅନ୍ୟ ଶିଳାଖଣ୍ଡ ଉପରକୁ ଡେଇଁ ଡେଇଁ ପ୍ରପାତ ଆଡ଼କୁ ଅଗ୍ରସର ହେଉଥାଏ ।



ମନ୍ତ୍ରୀ ଓ ଅମାତ୍ୟମାନେ ତାକୁ ଧରିବାକୁ ଚେଷ୍ଟା କରି ଖଣ୍ଡିଆ ଖାବରା ହେଲେ । ଜଣେ ଦୁଇଜଣଙ୍କ ପଗଡ଼ି ଖସି ପଡ଼ିଲା । ଗୋଡ଼ ଖସିଯିବା ଫଳରେ ଦୁଇଜଣ ଖଣ୍ଡିଏ ଶିଳାଖଣ୍ଡ ଉପରୁ ଯୋଡ଼ିଏ କାକୁଡ଼ି ଭଳି ଓହଳି ରହିଲେ ।

ପ୍ରପାତ ଆଗରେ, ଜଳଧାରା ଆଡ଼େ ପିଠି କରି ଛିଡ଼ା ହୋଇ ରଞ୍ଜୁ ହସିଲା ।

"ଆରେ ବାଳକ, ସେ ସ୍ଥାନ ବଡ଼ ଭୟଙ୍କର!" ରାଜା ଚେତାବନୀ ଶୁଣାଇଲେ ।

"ଆପଣଙ୍କ ସଂସର୍ଗଠୁଁ ଅଧିକ ଭୟଙ୍କର ନୁହେଁ, ମହାରାଜ!" ରଞ୍ଜୁ ଉତ୍ତର ଦେଲା ଓ ପ୍ରପାତର ନିକଟତର ହେବାକୁ ଲାଗିଲା । ପ୍ରପାତ ଉପରେ ମନୋରମ ଇନ୍ଦ୍ରଧନୁଟିଏ ରଙ୍ଗ ମେଞ୍ଚ ଭଳି ଶୋଭା ପାଉଥାଏ । ତା' ତଳେ ରଞ୍ଜୁ ଠିକ ଦେବତାଟିଏ ଭଳି ଅପରୂପ ଦିଶୁଥାଏ । ପ୍ରପାତର ପୃଷ୍ଠଭୂମିରେ ଉଚ୍ଚଳ ସବୁଜ ବୃକ୍ଷଲତା ଶୋଭିତ ପର୍ବତମାନେ ସକାଳର ସୂର୍ଯ୍ୟାଲୋକରେ ଉଦ୍‌ଭାସିତ ହୋଇ ଦିବ୍ୟ ଦିଶୁଥିଲେ ।

ପ୍ରପାତର ଧୂଳଧୂଳି ଜଳଚୂର୍ଣ୍ଣ ରଞ୍ଜୁ ଆଡ଼େ ଫୁତ୍କାରିତ ହୋଇ ଆସୁଥାଏ । ରଞ୍ଜୁ ଦୁଇ ବାହୁ ବଢ଼ାଇ ତା'ର ଶିହରଣ ଅନୁଭବ କଲା ।

"ମହାରାଜ, ମୁଁ ପ୍ରପାତର ଅନ୍ୟ ଦିଗକୁ ଗଲିଲି ।" ସେ କହିଲା ।

"ବାଳକ, ଯିଏ ସେପାରିକୁ ଯାଏ, ସିଏ ଆଉ ଲେଉଟି ଆସି ପାରେ ନାହିଁ ।" ରାଜା ପାଟିକରି କହିଲେ ।

"ହୁଏତ ସେମାନେ ଲେଉଟି ଆସିବାକୁ ମନ କରନ୍ତି ନାହିଁ । ମୁଁ କିନ୍ତୁ ଆସିବି, ପ୍ରଥମାରେ ଜୀବନ୍ୟାସର ରହସ୍ୟ ଜାଣିବା



ପରେ । ଆପଣ ସେଯାଏ ପ୍ରତିମାର ସୁରକ୍ଷା ପାଇଁ ବ୍ୟବସ୍ଥା କରିବେଟି ?"

ରାଜୁର କଣ୍ଠସ୍ୱର ପର୍ବତରେ ପ୍ରତିଧ୍ୱନି ତୋଳିଲା । ରାଜା ଚମତ୍କୃତ ହୋଇ ଅନାଇ-ଥାନ୍ତି । ହଠାତ୍ ଚେତ ଉଠି ସେ କହିଲେ, "ହଁ, ହଁ, ଆମ୍ଭେ ତା'ର ସୁରକ୍ଷା ବ୍ୟବସ୍ଥା କରିବୁଁ । ସେ ତ ଆମ୍ଭ ପାଇଁ ଲଡ଼ୁ ଭଳି, ଗୋଟାଏ ନୁହେଁ, ପାଞ୍ଚଆଏ ଲଡ଼ୁ ଭଳି । ଯିଏ ତାକୁ ଛୁଇଁବ, ସେ ତା' ମୁଣ୍ଡଟି ହରାଇବ । ତୁ କିନ୍ତୁ ଶୀଘ୍ର ଫେରିବୁ । ତୋତେ ରାଜ୍ୟରୁ ଅଂଶ ଦେବୁଁ । ସମସ୍ତେ କହନ୍ତି ଆମ୍ଭ କନ୍ୟା-ମାନେ ଦେଖିବାକୁ ଆମ୍ଭରି ଭଳି । ସେଥିରୁ ଜଣକୁ ତୁ ବାଛି ନେବୁ । ତେବେ ତୋର

ଯଦି ଧାରଣା ଆମ୍ଭେ ଯଥେଷ୍ଟ ସୁନ୍ଦର ନୋହୁଁ ଏହା ଭିତରେ ଆମ୍ଭେ ଅଧିକ ସୁନ୍ଦର ବନିଯିବୁଁ । ପ୍ରତିଥର ଗୋଟାଏ ଅଧିକା ମୁର୍‌ଗୀ ଖାଇବୁଁ । ଦିନକୁ ଦୁଇଥର କ୍ଷୌର ହେବୁଁ । ଜୀବନରେ ପୁଣି ସକାଳୁଆ ପବନ ଆମ୍ଭକୁ ସ୍ପର୍ଶ କରିବ, ତାକୁ ସେ ସୁଯୋଗ ଦେବୁଁ ନାହିଁ ।"

ଚନ୍ଦ୍ର, ପ୍ରସ୍ତ ପ୍ରସ୍ତ ମେଘ ଭିତରେ କ୍ରମେ ପୁରାପୁରି ଲୁଚିଗଲା ଭଳି ରାଜୁର ଚେହେରା ପ୍ରପାତର ପ୍ରସ୍ତ ପ୍ରସ୍ତ ଜଳଧାରା ଭିତରେ କ୍ରମେ ଝାପ୍‌ସା ହୋଇ ତା'ପରେ ପୁରାପୁରି ହଜିଗଲା ।

* * *

ପ୍ରପାତ ଟପିଯିବା ପାଇଁ କେତେ ସମୟ ଲାଗିଥିଲା, ସେକଥା ରାଜୁ ବୁଝିପାରିଲା ନାହିଁ । ମନେ ହେଉଥିଲା, ପାଦତଳର ମାଟି ଯେପରି ତୀବ୍ର ଗତିରେ ବିପରୀତ ଦିଗକୁ ଅପସରି ଯାଉଛି ଏବଂ ସେଥିପାଇଁ ପ୍ରତି ପଦକ୍ଷେପରେ ସେ ଅତିକ୍ରମ କରୁଛି ଏକ ଯୋଜନ ପଥ । ପ୍ରପାତ ସେପଟେ ବ୍ୟାପି ରହିଥିଲା ଏକ ପାର୍ବତ୍ୟ ମୁଲକ । କନକ ଉପତ୍ୟକାଠୁଁ ତାହା ଭିନ୍ନ ନୁହେଁ—ଅଥଚ ଭିନ୍ନ ! ମନେ ହେଲା, ସୂର୍ଯ୍ୟ ଯେପରିକି ସେଠି କେବେ ବି ବିଶେଷ ପ୍ରଖର ହୁଏ ନାହିଁ; ବୃକ୍ଷଲତା ପ୍ରଚୁର, କିନ୍ତୁ ଫୁଲ ଫୁଟେ ନାହିଁ !

ଭଲ ଭାବରେ ଚତୁର୍ଦ୍ଦିଗ ଦେଖିବା ନିମନ୍ତେ ରାଜୁ ଗୋଟିଏ ପାହାଡ଼ ଉପରକୁ ଉଠିଗଲା । ଦେଖିଲା ନଦୀଟିଏ ସେ ମୁଲକକୁ ପ୍ରାୟ ବେଷ୍ଟନ କରି ଦୂର ଦିଗନ୍ତରେ ମିଶି ଯାଇଛି ।



"ଆରେ, ଇଏ କିଏ ?"

ରାଜୁ ଏ ଅଦ୍ଭୁତ କଣ୍ଠସ୍ୱରରେ ଚମକି ପଡ଼ି ପଛକୁ ଚାହିଁଲା। ଖଣ୍ଡିଏ ଉଚ୍ଚର ଶିଳା ଉପରୁ ଜଣେ ବନ୍ଧକାୟ ବନ୍ଧ ଦାଢ଼ିବନ୍ତ ବ୍ୟକ୍ତି ତା' ଆଡ଼କୁ ଆସୁଥିଲା।

"କିଏ ତମେ ? କ'ଣ କରୁଛ ଏଠି ?" ଆଶ୍ଚର୍ଯ୍ୟ ହୋଇ ପଚାରିଲା ବନ୍ଧ ଦାଢ଼ୀବନ୍ତ।

"ମୁଁ ରାଜୁ। କିଛି କରୁନାହିଁ। ତମେ ?"

"ତମ କଥାର ଢଙ୍ଗ ବଡ଼ ଅଦ୍ଭୁତ ମନେ ହୁଏ, ତରୁଣ ! ମୁଁ ଏହି ଜ୍ଞାନ-ବିଜ୍ଞାନ ରାଜ୍ୟର ପୁରୋହିତ ତଥା ଏହାର ସୀମାନ୍ତର ପ୍ରଭୁ। ତମର ଉଦ୍ଦେଶ୍ୟ ?" ବନ୍ଧ ଦାଢ଼ୀବନ୍ତ ଉତ୍କଣ୍ଠିତ ଭାବରେ ପ୍ରଶ୍ନ କଲା।

"ମୁଁ ଦୂର ପଥର ଯାତ୍ରୀ। ଏ ରାଜ୍ୟ ଅତିକ୍ରମ କରିଯିବା ବ୍ୟତୀତ ମୋର ଅନ୍ୟ ଉଦ୍ଦେଶ୍ୟ ନାହିଁ।" ରାଜୁ ସହଜ ଭାବରେ ଉତ୍ତର ଦେଲା।

ବନ୍ଧ ଦାଢ଼ୀବନ୍ତର ତୀବ୍ର ଦୃଷ୍ଟି ଆଗରେ ଷଣ୍ଢାର ବି ଭୟରେ ଶିହରି ଉଠେ, ତେଣୁ ରାଜୁକୁ ଏଭଳି ନିର୍ଭୟ ଦେଖି ସେ ବିସ୍ମିତ ଓ ବିରକ୍ତ ହେଲା। ତେବେ ଉପରକୁ ସେ ଭଦ୍ର ବ୍ୟବହାର କରିବାକୁ ସ୍ଥିର କଲା।

"ତରୁଣ ! ତମକୁ ସ୍ୱାଗତ କରୁଛି। ଏଇ ନଦୀ ସନ୍ତରଣ ଦ୍ୱାରା ପାରି ହେଲେ ହେଲା। ତେଣିକି ଯେଣିକି ମନ ଯାଅ।"

ରାଜୁ ସେ ବୃଦ୍ଧଠୁଁ ଶୀଘ୍ର ଖସିଯିବାକୁ ବ୍ୟଗ୍ର ହେଉଥିଲା। ସେ ତତ୍କ୍ଷଣାତ୍ ନଦୀ ବକ୍ଷକୁ ଲମ୍ଫ ଦେଲା ଓ ଅନ୍ୟ ତୀରରେ ଉଠିଲା। ଆଶ୍ଚର୍ଯ୍ୟର କଥା, ସେ କୂଳକୁ ଉଠିବା ବେଳକୁ ସେଠି ଠିଆ ହୋଇଥିଲା ସେ ବୃଦ୍ଧ।

"ତମେ କେତେବେଳେ ନଦୀ ପାରିହେଲ ?" ରାଜୁ ପ୍ରଶ୍ନ କଲା।

"ମୁଁ ସେପାରିରେ ମିଳେଇ ଯାଇ ଏପାରିରେ ପୁଣି ଜମାଟ ବାନ୍ଧି ଗଲି। ବାସ୍ !"

"ଆଶ୍ଚର୍ଯ୍ୟ ! ଏହା ସମ୍ଭବ ?"

"ସମ୍ଭବ।" ବୃଦ୍ଧ ସତେ ଅବା ସେ ପ୍ରଶ୍ନ ଆଶା କରୁଥିଲା। ସେ ସଂକ୍ଷେପରେ ବୁଝାଇ ଦେଲା, "ଆମ ଦେହ କେତେକ ଶକ୍ତି ତରଙ୍ଗର ସ୍ଥୂଳ ରୂପ। ଯିଏ ଉପାୟ ଜାଣେ,

ହିଏ ତା' ଦେହକୁ ଶକ୍ତି ତରଙ୍ଗରେ ପରିଣତ କରି ପୁଣି ସେ ଶକ୍ତି ତରଙ୍ଗକୁ ଦେହରେ ପରିଣତ କରି ପାରିବ ।"

"ବୁଝିଲି ।"

"ନା ବାବୁ, ବୁଝିବା ଏତେ ସହଜ ନୁହେଁ । ଏହା ଜ୍ଞାନ-ବିଜ୍ଞାନ ରାଜ୍ୟ । ତଥାପି ଏ ଜ୍ଞାନଟି ଅଳ୍ପ କେତେଜଣଙ୍କ ଭିତରେ ସୀମାବଦ୍ଧ । ଏ ରାଜ୍ୟର ନାଗରିକ ହେବା ପରେ ଅଧିକ ବୁଝିବ । ଆସ, ତମକୁ ନୂଆ ନାମଟିଏ ଦିଏଁ । ନହେଲେ ତମେ ଆମର ନାଗରିକ ହୋଇ-ପାରିବ ନାହିଁ ।" ବୃଦ୍ଧ ଦାଢ଼ୀବାଲା ଗମ୍ଭୀର ହୋଇ କହିଲା ।

"ରାଜୁ" ତ କିଛି ମନ୍ଦ ନାମ ନୁହେଁ ।"

ପଛରୁ ମେଣ୍ଢା ମୁଣ୍ଡିଆ ଖାଇଲା ଭଳି ତମକି ପଡ଼ିଲା ବୃଦ୍ଧ । "ତମେ ତମ ନାମ ମନେ ରଖିଲ କିପରି ?" ସେ ଉତ୍ତେଜିତ ଭାବରେ ପ୍ରଶ୍ନ କଲା ।

"କାରଣ ଏଇଟା ମୋର ନିଜସ୍ୱ ନାମ । ବିଶେଷ ଲମ୍ବା ନୁହେଁ କି ଜଟିଳ ନୁହେଁ ।"

"ତରୁଣ, ତମେ ଜାଣନା, ଯିଏ ଥରେ ଏ ନଦୀ ପାରି ହେବ, ସେ ତା'ର ପୂର୍ବ ଜୀବନ ସମ୍ପୂର୍ଣ୍ଣ ପାଶୋରି ଦେବ । ନହେଲେ ସେ ଏ ରାଜ୍ୟର ନାଗରିକ ହେବ କିପରି ?"

"ତମ ରାଜ୍ୟର ନାଗରିକ ହେବା ପାଇଁ ମୋର କେଉଁ ଗରଜ ?" ରାଜୁ ବୃଦ୍ଧଠୁଁ ପୁଛିଗଲା ।



"ତରୁଣ, ତମେ ଉଦ୍ଧତ ! ଏ ଜ୍ଞାନ-ବିଜ୍ଞାନ ରାଜ୍ୟର ନାଗରିକ ହେବା ସୌଭାଗ୍ୟର କଥା । ମୁଁ ବେଶ କେତେଜଣ ପଥଭ୍ରଷ୍ଟଙ୍କୁ ନାଗରିକ କରିଛି । ତମ ଭିତରେ କିଛି ଗଳଦ ଅଛି ନିଶ୍ଚୟ ।" ବୃଦ୍ଧର ସ୍ୱର କୁପିତ ଶୁଣାଗଲା ।

ରାଜୁ ମନେ ମନେ ହସିଲା । ତା' ଭିତରେ ନିଶ୍ଚୟ ଗଳଦ କିଛି ନାହିଁ ବୋଲି ସେ ତା'ର ସ୍ମୃତି ଅତୁଟ ରଖି ପାରିଲା । ହଠାତ୍ ତା'ର ମନେ ହେଲା, ପ୍ରତିମା ଅଙ୍ଗୁଳିରୁ ତା' ଅଙ୍ଗୁଳି ଭିତରକୁ ଖସି ଆସିଥିବା ମୁଦିଟି ଯୋଗୁଁ ହିଁ ନଦୀର ସେଭଳି ଭୟଙ୍କର ପ୍ରଭାବରୁ ସେ ମୁକ୍ତ ରହି ପାରିଛି ।

"ତମେ ଆଉ ଥରେ ଦୁଇଥର ନଦୀରେ ସନ୍ତରଣ କଲ!" ବୃଦ୍ଧ ନିର୍ଦ୍ଦେଶ ଦେଲା।

"ନା, ମୋର ସେଭଳି ପ୍ରବୃତ୍ତି ନାହିଁ।"

"ପୁଣି ଔଦ୍ଧତ୍ୟ! ତମର ପ୍ରବୃତ୍ତି ଥିବା ନଥିବାର ପ୍ରଶ୍ନ କିଏ ଉଠାଉଛି? ଏହା ମୋର ଆଦେଶ।" ଏହା କହି ବୃଦ୍ଧ ହାତ ତାଳି ଦେଲା। ରାଜୁ ଚମକ୍ରୁତ ହୋଇ ଲକ୍ଷ୍ୟ କଲା, ସେ ଧ୍ୱନିର ପ୍ରତିଧ୍ୱନି କ୍ରମେ ଦୁର୍ବଳ ହେବା ପରିବର୍ତ୍ତେ ଅଧିକ ପ୍ରବଳ ହେଉଥିଲା।

"ଏମିତି ମଜାଦାର ପ୍ରତିଧ୍ୱନି ମୁଁ କେବେ ଶୁଣି ନାହିଁ!" ରାଜୁ କହିଲା।

"ଏହା ଆମର ଗୋଟାଏ ବୈଜ୍ଞାନିକ କରାମତି। ତମକୁ ମଜାଦାର ମନେ ଲାଗିଲା? ତାହାଠୁଁ ବେଶି କିଛି ନୁହେଁ?"

ବୃଦ୍ଧର ଏ ମନ୍ତବ୍ୟ ଉପରେ ରାଜୁ କିଛି କହିବା ପୂର୍ବରୁ ଭିନ୍ନ ଭିନ୍ନ ଦିଗରୁ ପ୍ରହରୀ ଦଳ ଭଳି ମନେ ହେଉଥିବା ଲୋକେ ତା' ଆଡ଼କୁ ଦୌଡ଼ି ଆସୁଥିବାର ସେ ଦେଖିଲା।

"ଧର ଏ ଚହଳିଆକୁ!" ବୃଦ୍ଧ ରୁକ୍ଷ ସ୍ୱରରେ ଆଦେଶ ଦେଲା।

ରାଜୁ ହରିଣ ଗତିରେ ଦୌଡ଼ି ପଳାଇଲା। ସେମାନେ ତାକୁ ଅନୁଧାବନ କଲେ। ଛୋଟ ଛୋଟ କେତେକ ପାହାଡ଼ ଅତିକ୍ରମ କରି ସେ ପହଞ୍ଚିଲା ଏକ ଉପତ୍ୟକାରେ। ଉପତ୍ୟକାର ଏକ ଦୂର ପ୍ରାନ୍ତରେ ଦେଖାଯାଉଥିଲା ଗୋଟିଏ ପ୍ରାସାଦ ଓ କେତେକ ଅଟ୍ଟାଳିକା। ରାଜୁ ଆଶ୍ରୟ ଆଶାରେ ସେହି ଦିଗରେ ଦୌଡ଼ିଲା।

ପ୍ରହରୀମାନେ ତା'ର ନିକଟତର ହୋଇ ଆସୁଥିଲେ। ଶ୍ରାନ୍ତ-ଶ୍ୱାସୀ ହେବାରୁ ରାଜୁ ସେମାନଙ୍କ ହାତରେ ଧରା ଦେବାକୁ ମନସ୍ଥ କଲା। ସେ ଦୌଡ଼ିବାରୁ କ୍ଷାନ୍ତ ହେଲା।

କିନ୍ତୁ ପ୍ରହରୀମାନେ ହଠାତ୍ ରହିଗଲେ। ସେମାନଙ୍କ ଦୃଷ୍ଟି ଅନୁସରଣ କରି ରାଜୁ ପାର୍ଶ୍ୱବର୍ତ୍ତୀ ଏକ ପାହାଡ଼ ଉପରକୁ ଚାହିଁଲା। ଯାହା ଦେଖିଲା, ସେଥିରେ ତା'ର ବିସ୍ମୟର ସୀମା ରହିଲା ନାହିଁ। (କ୍ରମଶଃ)





# ଶତ୍ରୁ - ମିତ୍ର

ନିଶା ଗରଜୁଥାଏ । ଭୁହାଙ୍କୁ ଭୁହା ଶୀତଳ ପବନ ସାଙ୍ଗକୁ ଝିପ ଝିପି ବର୍ଷା ହେଉଥାଏ । ଗଛଲତାମାନଙ୍କ ଭିତରୁ ସାଇଁ ସାଇଁ ଶବ୍ଦ ଶୁଭୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ଥରେ ମଧ୍ୟ ଦ୍ୱିଧା ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷ ଆରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ଏ ଦୁନିଆରେ କେତେବେଳେ ଶତ୍ରୁ ମିତ୍ରରେ ପରିଣତ ହୁଏ ତ କେତେବେଳେ ମିତ୍ର ଶତ୍ରୁରେ

## ବେତାଳ କଥା



ପରିଶ୍ରାନ୍ତ ହୁଏ । ଗୋଟାଏ କାହାଣୀ କହୁଛି, ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ଗନ୍ଧପୁର ରାଜ୍ୟ ଉପରେ ରାଜୁତି କରୁଥିଲେ ରାଜା ଧର୍ମଗୁପ୍ତ । ସେ ଜଣେ ସୁଶାସକ ଥିଲେ ।

ହଠାତ୍ ଦିନେ ରାତିରେ ସେନାପତି ପ୍ରାସାଦ ଅବରୋଧ କରି ରାଜା, ରାଣୀ ଓ ରାଜପୁତ୍ରଙ୍କୁ ଅସି ମୁନରେ ଭୟଭୀତ କରି ଠେଲି ଠେଲି ନେଇଯାଇ ପ୍ରାସାଦର ଗୋଟିଏ ବଡ଼ କୋଠରୀରେ କାରାରୁଦ୍ଧ କଲା । ପରଦିନ ସେ ସିଂହାସନରେ ବସିଗଲା । ତା'ର ଏ କାର୍ଯ୍ୟରେ ଯିଏ ପ୍ରତିବାଦ କରିବ ବା ବାଧା ଦେବ, ସିଏ ମୃତ୍ୟୁଦଣ୍ଡ ପାଇବ ବୋଲି ତା' ଲୋକେ ଘୋଷଣା କରିଦେଲେ । ଏ ଅପ୍ରତ୍ୟାଶିତ ଘଟଣାରେ ଲୋକେ ସ୍ତବ୍ଧ ହୋଇ ରହିଲେ ।

କିନ୍ତୁ ରାଜାଙ୍କୁ ଯେଉଁ ଘରେ ବନ୍ଦୀ କରାଯାଇଥିଲା, ସେ ଘର ଭିତରୁ ଗୋଟିଏ ଗୋପନ ସୁଡ଼ଙ୍ଗ ପଥ ବଣ ଭିତରକୁ ଲମ୍ବି ଯାଇଥିଲା ।

ରାଜା ଏକାକୀ ସେ ସୁଡ଼ଙ୍ଗ ଭିତର ଦେଇ ଯାଇ ବଣରେ ବାହାରିଲେ । ସେ ଚାଲୁଥାନ୍ତି, ହଠାତ୍ ଜଣେ ଅଶ୍ୱାରୋହୀ ଆସି ତାଙ୍କୁ ଅଟକାଇଲା ଓ କହିଲା, "ତୁ ପିନ୍ଧିଥିବା ସୁନାହାର ଓ ରତ୍ନ ମୁଦିଟିମାନ ଦେଇ ଦେ । ନହେଲେ ମରିବୁ । ମୁଁ ଡାକୁ ବିକଟବର୍ମା !"

ଡାକୁ ବିକଟବର୍ମା ନିକଟ ଅତୀତରେ ସେ ମୁଲକରେ ଭୀଷଣ ଉପଦ୍ରବ ଆରମ୍ଭ କରିଥିଲା ବୋଲି ରାଜା ତାକୁ ଧରିବାକୁ ଚେଷ୍ଟା କରୁଥିଲେ । ବର୍ତ୍ତମାନ କିନ୍ତୁ ସେ ଚୁପ୍‌ଚାପ୍ ସୁନାହାର ଓ ରତ୍ନମୁଦି ବଢ଼ାଇ ଦେଲେ ଓ ମୃଦୁ ହସି ଚାଲିବାକୁ ଆରମ୍ଭ କଲେ ।

ଡାକୁ ଆଶ୍ଚର୍ଯ୍ୟ ହୋଇ କହିଲା, "ରହ ! ତମେ କିଏ ? ଦେଖୁଛି, ତମେ ମୋତେ ଡରିଲ ନାହିଁ କି ପ୍ରତିରୋଧ ବି କଲ ନାହିଁ । ଏତେ ମୂଲ୍ୟବାନ ଜିନିଷ ସମର୍ପି ଦେଇ ଦୁଃଖିତ ବି ହେଲନାହିଁ । ସତ କୁହ, କିଏ ତମେ ?"

"ମୁଁ ରାଜା ଧର୍ମଗୁପ୍ତ । ମୋ ସେନାପତି ମୋ ପଛରେ ଷଡ଼ଯନ୍ତ୍ର କରି ମୋ ସିଂହାସନ ମାଡ଼ି ବସିଛି । ତମେ ତା' ତୁଳନାରେ ପ୍ରଶଂସନୀୟ । କାରଣ ତମେ ଅନ୍ତତଃ ଆଗରୁ

ଆସି ଧମକ ଦେଇ ମୋ ଜିନିଷ ନେଲ । ସେଥିପାଇଁ ହସିଲି ।" ରାଜା କହିଲେ ।

ଡାକୁ ଘୋଡ଼ାରୁ ଓହ୍ଲାଇ ପଡ଼ି ରାଜାଙ୍କୁ ନମସ୍କାର କଲା ଓ କହିଲା, "ମହାରାଜ! ମୋର ଦସ୍ୟୁଦଳ ଧରି ମୁଁ ଯାଇ ସେନାପତି ଉପରେ ହାମ୍‌ଲା କରିବାକୁ ପ୍ରସ୍ତୁତ ।"

ରାଜା କହିଲେ, "ଧନ୍ୟବାଦ । ଯଦି ତମ ସାହାଯ୍ୟ ଲୋଡ଼ା ହେବ, ତେବେ ଅବଶ୍ୟ ତମ ପାଖକୁ ଖବର ପଠାଇବି !"

ରାଜା ଆଉ କିଛି ବାଟ ଅଗ୍ରସର ହୋଇଛନ୍ତି, ଦେଖିଲେ ଗୋଟାଏ ରାକ୍ଷସ ଗୋଟାଏ ଶୂକର ଧରି ପକାଇ ତାକୁ ଖାଇବାକୁ ଉଦ୍ୟତ ହେଉଛି । ସେ ଶୂକର ଭୀଷଣ ରଡ଼ି କରୁଥାଏ । ରାଜା ନ ଦେଖିଲା ଭଳି ଆଗକୁ ଚାଲିଲେ ।

"ତମେ କିଏ ?" ରାକ୍ଷସ ଆଶ୍ଚର୍ଯ୍ୟ ହୋଇ ପଚାରିଲା ଓ କହିଲା, "ମୋ ଭଳି ଜଣେ ରାକ୍ଷସ ଆଗରେ ତିଳେ ବି ଛନିଆ ନ ହେବା ଭଳି ମଣିଷ ଆଜି ମୁଁ ପ୍ରଥମେ ଦେଖିଲି ।"

ରାଜା କହିଲେ, "ମୁଁ ଏ ରାଜ୍ୟର ରାଜା ଧର୍ମଗୁପ୍ତ ।" ଏହା ପରେ ସେ କପଟି ସେନାପତିର ବିଶ୍ୱାସଘାତକତା ଯୋଗୁଁ ବନ୍ଦୀ ହୋଇଥିଲେ ସେକଥା ବର୍ଣ୍ଣନା କଲେ ।

ରାକ୍ଷସ ସବୁ ଶୁଣି କହିଲା, "ତମେ ଖାଲି ରାଜା ନୁହଁ, ବୀର । ତମକୁ ସାହାଯ୍ୟ କଲେ ମୋର ପୁଣ୍ୟ ହେବ । ମୁଁ ଯାଇ ସେ ବିଶ୍ୱାସଘାତକ ସେନାପତି ସହ ଲଢ଼ିବାକୁ ପ୍ରସ୍ତୁତ ।"

"ଧନ୍ୟବାଦ । ପ୍ରୟୋଜନ ହେଲେ ମୁଁ ନିଶ୍ଚୟ ତମକୁ ଖବର ଦେବି ଓ ତମ





ସାହାଯ୍ୟ ଗ୍ରହଣ କରିବ।" ଏହା କହି ରାଜା ଚାଲିଗଲେ।

ରାଜା ଯାଇ ବୈଶାଳୀ ନଗରୀରେ ପହଞ୍ଚିଲେ। ବୈଶାଳୀ ସହ ତାଙ୍କ ରାଜ୍ୟ ଚନ୍ଦ୍ରପୁରର ବହୁଦିନ ଧରି ବିବାଦ ଚାଲି ଆସୁଥିଲା। ତଥାପି ସେ ଯାଇ ବୈଶାଳୀର ରାଜାଙ୍କୁ ଭେଟିଲେ ଓ କହିଲେ, "ମହାରାଜ, ଦୁଇ ତିନି ପୁରୁଷ ଧରି ଆମ ଦୁଇ ରାଜ୍ୟ ଭିତରେ ଶତ୍ରୁତା ଲାଗିଛି। ତଥାପି ଆଜି ମୁଁ ଆପଣଙ୍କ ସାହାଯ୍ୟରେ ମୋ ବିଶ୍ୱାସଘାତକ ସେନାପତିଙ୍କୁ ଦମନ କରିବାକୁ ଚାହେଁ। ଏତିକି କହିବ, ଯଦି ଦୈବାତ୍ କେବେ ଆପଣ ରାଜ୍ୟଚ୍ୟୁତ ହୁଅନ୍ତି, ତେବେ ମୁଁ ପ୍ରାଣପାତ କରି ଆପଣଙ୍କର ସହାୟତା କରିବ।"

ବୈଶାଳୀର ରାଜା କିଛି ସମୟ ଚିନ୍ତା କରି କହିଲେ, "ମହାରାଜ, ଆପଣଙ୍କର ସହାୟତା କରିବାକୁ ମୁଁ ପ୍ରସ୍ତୁତ।" ସେ ସଙ୍ଗେ ସଙ୍ଗେ ନିଜ ସୈନ୍ୟବାହିନୀ ଧର୍ମଗୁପ୍ତଙ୍କ ନେତୃତ୍ୱରେ ଚନ୍ଦ୍ରପୁରୀ ପଠାଇଲେ। ସେ ସୈନ୍ୟବାହିନୀ ସାହାଯ୍ୟରେ ରାଜା ଧର୍ମଗୁପ୍ତ ଅକ୍ଳେଶରେ ସେନାପତିଙ୍କୁ ପରାଜିତ କଲେ ଓ ବନ୍ଦୀ କଲେ। ରାଜ୍ୟରେ ଆନନ୍ଦ ଲହରୀ ଖେଳିଗଲା।

ଏହା ପରେ ପରେ ରାଜା ଦିନେ ଅରଣ୍ୟ ଭିତରକୁ ଯାଇ ରାକ୍ଷସକୁ ଭେଟିଲେ ଓ କହିଲେ, "ଶୁଣ, ତମେ ଏଠାରେ ରହିବା ଫଳରେ ଆମର ପ୍ରଜାମାନେ ସ୍ୱଚ୍ଛନ୍ଦରେ ଅରଣ୍ୟକୁ ଯାଇପାରୁ ନାହାନ୍ତି। ତମେ ଯେଉଁଠାରୁ ଆସିଛ, ସେଠାକୁ ଚାଲିଯାଅ।"

"ନ ଗଲେ ?" ରାକ୍ଷସ ରୁକ୍ଷ ସ୍ୱରରେ ପଚାରିଲା।

ରାଜା ନିଜ ତରବାରି ଉପରେ ହାତ ପକାଇଲେ ଓ କହିଲେ, "ଏ ରାଜ୍ୟରେ ଜଣେ ରାଜା ରହିବ ନହେଲେ ଗୋଟିଏ ରାକ୍ଷସ ରହିବ। ଦୁହେଁ ରହିପାରିବେ ନାହିଁ।"

ରାକ୍ଷସ ରାଜାଙ୍କ ଆଡ଼କୁ ଥରେ ଅନାଇ ଦେଇ ଅରଣ୍ୟ ଛାଡି ଚାଲିଗଲା।

ଏହାର ଦୁଇଦିନ ପରେ ରାଜା ହଠାତ୍ ଦିନେ ଅରଣ୍ୟର ଗୋଟିଏ ଅଞ୍ଚଳ ଘେରାଉ କରି ଡାକୁ ବଜ୍ରବର୍ମାକୁ ଧରିନେଲେ। ତା' ଦସ୍ୟୁଦଳର ଅନ୍ୟମାନେ ଆତ୍ମସମର୍ପଣ କଲେ।

ଏହାର କିଛିଦିନ ପରେ ଦିନେ ତାଙ୍କର ଏକ ଛୋଟ ପ୍ରତିବେଶୀ ରାଜ୍ୟ କାନେଶ୍ବରରୁ ଦୂତ ଆସି ତାଙ୍କୁ ଖବର ଦେଲା କି ବୈଶାଳୀ କାନେଶ୍ବର ଆକ୍ରମଣ କରିଛି । ନିଜ ରାଜ୍ୟ ରକ୍ଷା କରିବା ନିମନ୍ତେ କାନେଶ୍ବରର ରାଜା ଚନ୍ଦ୍ରପୁରର ଶରଣ ନେଇଛନ୍ତି ।

ରାଜା ଧର୍ମଗୁପ୍ତ ସଙ୍ଗେ ସଙ୍ଗେ ନିଜ ସୈନ୍ୟଦଳ ଧରି କାନେଶ୍ବର ସୀମାନ୍ତରେ ପହଞ୍ଚିଲେ ଓ ଯୁଦ୍ଧ କରି ବୈଶାଳୀର ସୈନ୍ୟ-ବାହିନୀକୁ ପରାସ୍ତ କରିବା ସଙ୍ଗେ ସଙ୍ଗେ ବୈଶାଳୀ ରାଜାଙ୍କୁ ବନ୍ଦୀ କଲେ ।

ବନ୍ଦୀ ରାଜା ଧର୍ମଗୁପ୍ତଙ୍କୁ କହିଲେ, "ଦେଖୁଛି, ଆପଣ ଆମର ଦୁଇ ଜନ୍ମ ପୁରୁଷର ଶତ୍ରୁତାକୁ ଭୁଲି ନାହାନ୍ତି!"

ଧର୍ମଗୁପ୍ତ ଉତ୍ତର ଦେଲେ, "ମହାରାଜ! ମୁଁ ଭୁଲିଯିବାକୁ ଆଗ୍ରହୀ । ସେ ଦିଗରେ କିଛି ପକ୍କା ବ୍ୟବସ୍ଥା କଲେ କିପରି ହୁଅନ୍ତା ?"

"କି ବ୍ୟବସ୍ଥା ?" ବୈଶାଳୀର ବନ୍ଦୀ ରାଜା କୌତୂହଳୀ ହୋଇ ପଚାରିଲେ ।

"ମହାରାଜ, ଆପଣଙ୍କ ଉଆସରେ ମୁଁ ଗୋଟିଏ ଦିନ ରହିଥିଲି । ସେହି ଦିନକ ଭିତରେ ଆପଣଙ୍କ କନ୍ୟାକୁ ମୁଁ ମୋ ନିଜ କନ୍ୟା ଭଳି ସ୍ନେହ କରିଥିଲି । ମୋର ପୁଅ ତା'ର ଉପଯୁକ୍ତ ବରପାତ୍ର ହେବ । ଆପଣ ତା'କୁ ମୋର ପୁତ୍ରବଧୂ ହେବାକୁ ଦେବେ କି ?" ଧର୍ମଗୁପ୍ତ ନମ୍ର ସ୍ୱରରେ କହିଲେ ।



ବୈଶାଳୀର ରାଜା ଆନନ୍ଦରେ ଉତ୍ଫୁ
ହୋଇ କହିଲେ, "ମହାରାଜ! ଏହାଠୁଁ ବ
ସୁଖକର ପ୍ରସ୍ତାବ ଆଉ କ'ଣ ହୋଇପାରେ ?

ପ୍ରବଳ ଉତ୍ସାହ ଓ ଜାକଜମକ ସହକାରେ
ପ୍ରସ୍ତାବିତ ବିବାହ ଅନୁଷ୍ଠିତ ହେଲା । ଉଭ
ରାଜ୍ୟ ଭିତରେ ସ୍ଥାୟୀ ବନ୍ଧୁତା ସ୍ଥାପିତ ହେଲ

ବେତାଳ ଟିକିଏ ଚୁପ୍ ରହି କଣ୍ଠସ୍ୱର ଗ
କରି ପ୍ରଶ୍ନ କଲା, "ରାଜା! ମୋ ମନରେ
କେତୋଟି ପ୍ରଶ୍ନ ଅଛି । ଯେଉଁ ଡାକୁ ଓ ଗଞ୍ଜ
ରାଜା ଧର୍ମଗୁପ୍ତଙ୍କ ସହାୟତା କରିବାକୁ ପ୍ରସ୍ତୁ
ଥିଲେ, ସେମାନଙ୍କୁ ରାଜା ଶତ୍ରୁ ରୂପେ ଦେଖି
କାହିଁକି ? ଆଉରି ବଡ଼ ପ୍ରଶ୍ନ ହେଲା, ସେ
ବୈଶାଳୀ ରାଜାଙ୍କ ସହାୟତାରେ ସେ ନି

ରାଜ୍ୟ ଫେରି ପାଇଲେ, ସେ ରାଜାଙ୍କୁ ସେ ବନ୍ଦୀ କଲେ କାହିଁକି ? ଜାଣିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନିର୍ବାକ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।”

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, “ଧର୍ମଗୁପ୍ତ ଡାକୁ ଓ ରାକ୍ଷସର ସହାୟତା ପ୍ରାର୍ଥନା କରି ନଥିଲେ । ସେ ଦୁହେଁ ତାହା ଦେବାକୁ ପ୍ରସ୍ତାବ ଦେଇଥିଲେ । ସେତେବେଳେ ରାଜା ଧର୍ମଗୁପ୍ତ ଥିଲେ ରାଜ୍ୟହୀନ । ଅତଏବ ସେମାନଙ୍କୁ ଦମନ କରିବାର ଦାୟିତ୍ୱ ତାଙ୍କର ନଥିଲା । ତାଙ୍କ ଆଗରେ ଆଶୁ କାର୍ଯ୍ୟ ଥିଲା ରାଜ୍ୟର ଉଦ୍ଧାର । ରାଜ୍ୟର ଉଦ୍ଧାର ହେବା ମାତ୍ରେ ତାଙ୍କର କର୍ତ୍ତବ୍ୟ ହେଲା ପ୍ରଜାମାନଙ୍କୁ ଭୟ ଓ ବିପଦ-ମୁକ୍ତ କରିବା । ତେଣୁ ସେ କର୍ତ୍ତବ୍ୟ କଲେ ।

“ବୈଶାଳୀର ରାଜାଙ୍କୁ ସେ ପ୍ରଥମରୁ ଯେଉଁ ସର୍ତ୍ତ ଦେଇଥିଲେ, ତାହା ସେ ଭଙ୍ଗ କରି ନାହାନ୍ତି । ସେ ଯେପରି ବୈଶାଳୀର ଶରଣ ନେବାରୁ ବୈଶାଳୀ ରାଜା ତାଙ୍କୁ ରକ୍ଷା କଲେ, ସେହିପରି କାନେଶ୍ୱର ରାଜା ତାଙ୍କ ଶରଣ ନେବାରୁ ସେ କାନେଶ୍ୱରଙ୍କୁ ରକ୍ଷା କଲେ । ତା'ଛଡ଼ା ସେ ବୈଶାଳୀ ରାଜାଙ୍କ ସହାୟତାରେ ନିଜ ସିଂହାସନ ଫେରି ପାଇଥିଲେ ବୋଲି ସେ ଦୁର୍ବଳ ବୋଲି ଅନ୍ୟ ରାଜାମାନଙ୍କର ଧାରଣା ଜନ୍ମିଥିବା ସ୍ୱାଭାବିକ । ସେ ଧାରଣା ଦୂର କରିବା ସକାଶେ ଥରେ ବୈଶାଳୀ ରାଜାଙ୍କୁ ପରାସ୍ତ କରିବା ରାଜନୀତି ଦୃଷ୍ଟିରୁ ଦରକାର ଥିଲା । କିନ୍ତୁ ଅନ୍ତରରେ ସେ ବୈଶାଳୀ ରାଜାଙ୍କୁ ଶ୍ରଦ୍ଧା କରୁଥିଲେ ଓ ତାଙ୍କ ସହ ଶାନ୍ତି ସ୍ଥାପନ ପାଇଁ ଆଗ୍ରହୀ ଥିଲେ ବୋଲି ତାଙ୍କ ପ୍ରସ୍ତାବରୁ ପ୍ରମାଣିତ ହେଲା ।”

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ବାୟାଣୀ ବାସନ୍ତୀ

ଯଦି କେବେ ମୋହନପୁର ଗାଁକୁ ଯାଇ ଦୁଇ ଚାରିଦିନ ରହିବ, ତେବେ ବାୟାଣୀ ବାସନ୍ତୀ କଥା ନିଶ୍ଚୟ ଶୁଣିବ ।

ବାସନ୍ତୀକୁ ଲୋକେ ବାୟାଣୀ ବାସନ୍ତୀ ବୋଲି କହିବାର କାରଣ, ସେ ଏଡ଼େ ବୋକୀ ଯେ ତା' କଥାରେ ଲୋକେ ଯେତେ ହସନ୍ତି, ତା' ପ୍ରତି ସେତିକି ଦୟା ବି କରନ୍ତି ।

ପ୍ରଥମେ ଯେଉଁଦିନ ସେ ବୋହୂ ହୋଇ ଆସିଲା, ସେଦିନ କଥା ତା' ଶାଶୂ କେବେ ବି ଭୁଲିପାରିବେ ନାହିଁ । ଶାଶୂଙ୍କର ଭଲ ଭାବରେ ସେବା ଶୁଶ୍ରୂଷା କରିସାରି ସେ ପଚାରିଲା, "ମା, ଏଥର ତ ମୁଁ ଆସିଗଲି, ଘର ସମ୍ଭାଳିବି । ତମେ ସ୍ୱର୍ଗକୁ ଯାଉନ ?"

ପ୍ରଥମେ ତ , ଶାଶୂ କିଛି ବୁଝିପାରିଲେ ନାହିଁ । ବୋହୂ କହୁଛି କ'ଣ ? "ବୋହୂ, ତୁ ମୋତେ କେଉଁଠାକୁ ଯିବାକୁ କହୁଛୁ ? ମୁଁ ଠିକ୍ ଧରି ପାରିଲି ନାହିଁ ।" ଶାଶୂ ପଚାରିଲେ ।

"ସ୍ୱର୍ଗକୁ ଯିବାକୁ କହୁଥିଲି ।" ବୋହୂ ଉତ୍ତର ଦେଲା ।

ଶାଶୂ କାବା ହୋଇ ପଚାରିଲେ, "ବୋହୂ! ତୁ ଏକଥା କାହିଁକି କହିଲୁ ?"

ବାସନ୍ତୀ ନିରୀହ କଣ୍ଠରେ ଉତ୍ତର ଦେଲା, "କାହିଁକି ? ମୋ ବୋଉ ତ ସବୁବେଳେ କହେ, ଯେଉଁଦିନ ଘରକୁ ବୋହୂ ଆସିବ, ଅର୍ଥାତ୍ ମୋ ଭାଇ ବାହା ହେବ, ସେହିଦିନ ସେ ଶାନ୍ତିରେ ସ୍ୱର୍ଗକୁ ଯିବ!"

ଶାଶୂ ବୁଝିଲେ ବାସନ୍ତୀ ସତରେ ନିର୍ବୋଧ ଭାବରେ ସରଳ । ସେ କହିଲେ, "ବୋହୂ! ମୁଁ ଯାଆନ୍ତି ଯେ, କିନ୍ତୁ ଈଶ୍ୱର କହିଲେ କି ନାତି ମୁହଁ ଦେଖିସାରି ଗଲେ ମୋତେ ଅଧିକ ସୁଖ ମିଳିବ ।"

"ତା' ହେଲେ ରହିଥାଅ ।" ବାସନ୍ତୀ ଉତ୍ତର ଦେଲା ।

ଯଥା ସମୟରେ ବାସନ୍ତୀର ପୁଅ ହେଲା । ବାସନ୍ତୀ ଦିନେ କହିଲା, "ମା, ତମେ କ'ଣ ଏଥର ସ୍ୱର୍ଗକୁ ଯିବ ?"

"ନାହିଁରେ ବୋହୂ, ଈଶ୍ୱର କହିଲେ, ବାସନ୍ତୀ ଏକା ପିଲାକୁ ସମ୍ଭାଳି ପାରିବ ନାହିଁ । ତେଣୁ ମୋତେ କିଛିଦିନ ରହିବାକୁ ହେବ ।" ଶାଶୁ ଉତ୍ତର ଦେଲେ ।

"ମୁଁ ବି ସେଇଆ କହୁଛି । ଦେଖୁଛି, ଈଶ୍ୱରଙ୍କର ବେଶ୍ ବୁଦ୍ଧି ଅଛି ।" ବାସନ୍ତୀ ଉତ୍ତର ଦେଲା । ପିଲା ବଡ଼ ହେଲା । ହଠାତ୍ ଦିନେ ବାସନ୍ତୀ ଶାଶୂକୁ ପଚାରିଲା, "ମା, ଏବେ କ'ଣ ତମେ ଚାଲିଯିବ ?"

ଶାଶୂ ହସି ହସି କହିଲେ, "ଆରେ ଝିଅ, ଚାଲିଯିବାକୁ ବସିଥିଲି ଯେ, ଦେଖିବା ବେଳକୁ ଏହା ଭିତରେ ସ୍ୱର୍ଗରେ ସବୁ ଯାଗା ପୂରା ହୋଇଗଲାଣି ।"

ବାସନ୍ତୀ କହିଲା, "ହଁ, ସେମିତି ହୋଇଥିବ । ଆମ ଗାଁ ଆଗରେ ଯେଉଁ ସୁନ୍ଦର ଖାଲି ପଡ଼ିଆ ଥିଲା, ସେଠି ତ ଏହା ଭିତରେ ଦଶ କୋଡିଏ ଘର ଉଠି ସାରିଲାଣି । ସ୍ୱର୍ଗରେ କେଉଁଠୁ ଖାଲି ଯାଗା ରହନ୍ତା ?"

ବାସନ୍ତୀର ପୁଅ ବଡ଼ ହେଲା ଓ ବାହା ହେଲା । ନିଜ ବୋହୂକୁ ଦେଖିବା ପରେ ଦିନେ ବାସନ୍ତୀ ଯାଇ ଶାଶୂକୁ ଡରି ଡରି କହିଲା, "ମା, ଏବେ ତ ମୋର ବୋହୂ ଆସିଗଲାଣି । ସେ ମୋତେ ସ୍ୱର୍ଗକୁ ଯିବାକୁ କହିବ ପରା ?"

"ଆରେ ନା, ପାଗଳି, ସମସ୍ତେ କ'ଣ ତୋ ଭଳି ଏତେ ଉଦାର, ଏତେ ଭଲ ହୋଇଛନ୍ତି ଯେ ଶାଶୂକୁ ଶାନ୍ତି ଦେବା ପାଇଁ ବ୍ୟସ୍ତ ହେବେ ? ସେ ଯଦି ତୋତେ ସ୍ୱର୍ଗକୁ ଯିବାକୁ କହିବ, ତୁ କହିବୁ କି ଆଗେ ତୋ ଶାଶୂ ଯାଇ ସେଠି ତୋ ପାଇଁ ସ୍ଥାନ ଯୋଗାଡ଼ କରିବା ପରେ ଯାଇ ତୁ ଯିବୁ । ହେଲା ?" ଶାଶୂ କହିଲେ । ବାସନ୍ତୀ ଖୁସି ହୋଇଗଲା ।



# ଅମୃତସର



ଚତୁର୍ଥ ଶିଖ୍ ଗୁରୁ ରାମଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଅମୃତସରର ବିଖ୍ୟାତ ସ୍ୱର୍ଣ୍ଣ ମନ୍ଦିର କେବଳ ଯେ ଶିଖମାନଙ୍କର ତୀର୍ଥ ତାହା ନୁହେଁ, ସମସ୍ତଙ୍କ ପାଇଁ, ବିଶେଷତଃ ହିନ୍ଦୁମାନଙ୍କ ପାଇଁ ତାହା ଏକ ପବିତ୍ର ଧର୍ମ କ୍ଷେତ୍ର। ଚାରିଦିଗକୁ ଏହାର ଚାରି ଦ୍ୱାର। ଏହାର ତାତ୍ପର୍ଯ୍ୟ, ସମସ୍ତଙ୍କ ସକାଶେ ଏହା ଉନ୍ମୁକ୍ତ।



ଗୁରୁ ରାମଦାସଙ୍କୁ ସମ୍ରାଟ ଆକବର କିଛି ଜମି ଉପହାର ଦେଇଥିଲେ । ଗୁରୁ ରାମଦାସ ସେଠାରେ ଗୋଟିଏ ସରୋବର ଖନନ କରି ତା'ର ନାମ ଦେଲେ ଅମୃତସର । ଏହା ୧୫୭୯ର କଥା । ସରୋବରର ଚତୁର୍ଦ୍ଦିଗରେ କ୍ରମେ ସହର ଗଢି ଉଠିଲା ଓ ସହରର ନାମ ବି ହେଲା ଅମୃତସର ।

ସରୋବର ମଝିରେ ପଞ୍ଚମ ଗୁରୁ ଅର୍ଜ୍ଜନ ଦେବ ମନ୍ଦିର ନିର୍ମାଣ ଆରମ୍ଭ କରିଥିଲେ । ମିଆଁ ମୀର୍ ନାମକ ଜଣେ ମୂସଲ୍‌ମାନ ସନ୍ଥଙ୍କ ଦ୍ୱାରା ସେ ଏହି ମନ୍ଦିରର ଭିତ୍ତି ସ୍ଥାପନ କରିଥିଲେ । ଏହାଦ୍ୱାରା ସେ ଶିଖଧର୍ମ ଗୋଷ୍ଠି-ସର୍ବସ୍ୱ ନୁହେଁ ବୋଲି ପ୍ରମାଣ କରିଥିଲେ ।





୧୮୦୩ ମସିହାରେ ମହାରାଜା ରଣଜିତ ସିଂହ ମନ୍ଦିରର ନିମ୍ନାର୍ଦ୍ଧ ଝଙ୍ଗମଲମଲ ପଥର ଦ୍ୱାରା ଆବରିତ କଲେ । ଉପରାର୍ଦ୍ଧ ତମ୍ବା ଦ୍ୱାରା ଏବଂ ସର୍ବୋଚ୍ଚ ଅଂଶ ଗୃରଶହ କିଲୋଗ୍ରାମ ଓଜନର ସୁନା ପାତଆ ଦ୍ୱାରା ଆବରିତ କଲେ ।

ସୁବର୍ଣ୍ଣ ମନ୍ଦିର ନାମରେ ବିଦିତ ଏହି ମନ୍ଦିର ପାଖରେ ଶିଖଧର୍ମର ସର୍ବୋଚ୍ଚ ଅନୁଷ୍ଠାନ ଅକାଲ୍ ତଖ୍ତ୍ ବିଦ୍ୟମାନ । ଅକାଲ ତଖ୍ତ ଅର୍ଥ ଅମର ଆସନ । ଷଷ୍ଠ ଶିଖ୍ ଗୁରୁ ହରିଗୋବିନ୍ଦ ଏହାର ପ୍ରତିଷ୍ଠା କରିଥିଲେ । ଗୁରୁମାନେ ବ୍ୟବହାର କରିଥିବା ଅସ୍ତ୍ରଶସ୍ତ୍ର ସବୁ ଏଇଠି ଗଚ୍ଛିତ ଅଛି ।





ସୁବର୍ଣ୍ଣ ମନ୍ଦିରରେ ସର୍ବଦା ସଙ୍ଗୀତ ଓ ଧର୍ମଗ୍ରନ୍ଥ ପଠନ ଚାଲିଥାଏ । ଅବିରତ ଧାରାରେ ଭକ୍ତମାନେ ଆସୁଥାନ୍ତି । ମନ୍ଦିର ପରିସର ଭିତରେ ଶିଖମାନଙ୍କର ଇତିହାସ ସମ୍ପର୍କିତ ବହୁତ ଅନୁଷ୍ଠାନ ରହିଛି ।

ଅମୃତସର ଭିତରେ ଥିବା ଆଉ ଏକ ବିଶେଷ ଧର୍ମ ପ୍ରତିଷ୍ଠାନ ହେଲା ବାବା ଅଟଳ ଗୁରୁଦ୍ୱାର । ଗୁରୁ ଓ ବିଶିଷ୍ଟ ସାଧୁସନ୍ଥମାନଙ୍କ ବ୍ୟବହୃତ ବହୁ ପଦାର୍ଥ ଏଠାରେ ମଧ୍ୟ ରହିଛି । ସର୍ବଦା ଏହା ଜନସମାକୀର୍ଣ୍ଣ ରହିଥାଏ ।





ବାବା ଅଟଳ ଗୁରୁଦ୍ୱାରର କାନ୍ଥମାନଙ୍କରେ ଶିଖ୍ ଇତିହାସର ଭିନ୍ନ ଭିନ୍ନ ଅଧ୍ୟାୟ ଉପରେ ଅନେକ ଚିତ୍ର ରହିଛି । ଏହି ନବତଳ ଗୃହ ଗୁରୁ ହରଗୋବିନ୍ଦଙ୍କ ପୁତ୍ର ବାବା ଅଟଳରାଏଙ୍କ ସ୍ମୃତି ବହନ କରୁଛି ।

ସ୍ୱର୍ଣ୍ଣମନ୍ଦିରର ଦକ୍ଷିଣ ପାର୍ଶ୍ୱରେ 'ଗୁରୁ କା ବାଗ୍' ନାମକ ସୁନ୍ଦର ଉଦ୍ୟାନଟିଏ ରହିଛି । ତିରିଶ ଏକର ପରିମିତ ଏ ଉଦ୍ୟାନ ଡାଳିମ୍ବ, କମଳା ଓ ଅନ୍ୟାନ୍ୟ ଫଳ ବୃକ୍ଷମାନଙ୍କରେ ସମୃଦ୍ଧ । ଉଦ୍ୟାନ ଭିତରେ ରହିଛି ଏକ ମନୋରମ ପୁଷ୍କରିଣୀ ।





ସ୍ୱର୍ଣ୍ଣ ମନ୍ଦିରଠୁଁ ଜାଲିଆନାୱାଲାବାଗର ଦୂରତ୍ୱ ବେଶି ନୁହେଁ । ୧୯୧୯ ମସିହାର ଏପ୍ରିଲ ୧୩ ତାରିଖ ଦିନ ଏଠାରେ ଜଣେ ଉଦ୍ଧତ ବ୍ରିଟିଶ୍ କର୍ମଚାରୀଙ୍କ ଆଦେଶରେ ନିରସ୍ତ୍ର, ନିରୀହ ଜନତା ଉପରେ ଗୁଳି ଚାଳିବା ଫଳରେ ହଜାର ହଜାର ଲୋକ ପ୍ରାଣ ହରାଇଥିଲେ ।




# କିନ୍ତୁ !

ଅନେକ ଦିନ ତଳର କଥା । ମହାନଦୀ କୂଳରେ ଗୋଟାଏ ଗାଁରେ ରହୁଥାଏ ହରିହର । ନଦୀ ପାରି ହୋଇ କେହି କେହି ତୀର୍ଥ କରିବାକୁ ଯାଉଥାନ୍ତି ତ କେହି କେହି ବେପାର କରିବାକୁ ଯାଉଥାନ୍ତି । ହରିହର ସେମାନଙ୍କ ମାଲପତ୍ର ନେଇ ଅଳ୍ପ ଦୂରରେ ଥିବା ହାଟ ଉପରେ ସେମାନଙ୍କୁ ପହଞ୍ଚାଇ ଦେଉଥାଏ, ସେଠାରୁ ତୀର୍ଥକୁ ଓ ସହରକୁ ଯିବା ନିମନ୍ତେ ଶଗଡ଼ ଏବଂ ଘୋଡ଼ାଗାଡ଼ି ମିଳୁଥାଏ ।

ହରିହରର ନିଜର ଖଣ୍ଡିଏ ଘର ଥିଲା । ଘରେ ଥିଲେ ତା'ର ସ୍ତ୍ରୀ ଓ ଗୋଟିଏ ବୋଲି ପିଲା । ସେ ଯେତିକି ଉପାର୍ଜନ କରୁଥିଲା, ସେଥିରେ ସେମାନଙ୍କୁ ଚଳାଇ ମଧ୍ୟ କିଛି ପଇସା ବଳୁଥିଲା, ସେ ତାହା ସଞ୍ଚୟ କରି ରଖୁଥିଲା ।

ଦିନେ ତା' ସହ ଦେଖା ହେଲା ଗୋଟାଏ ଅଧାପାଗଳିଆ ଲୋକର । ସେ ଲୋକ ଅନେକ ସମୟରେ ବଣରେ ବୁଲୁଥାଏ । ଲୋକଟି ହରିହରକୁ କହିଲା, "ବଣ ଭିତରେ ଭଙ୍ଗା ଦେଉଳ ପାଖରେ ଯେଉଁ ବରଗଛ ଗୁଡ଼ାକ ରହିଛନ୍ତି, ସେଥିରେ ଅନେକ ଭୂତ ଥା'ନ୍ତି । ସେମାନେ ପୋତାଧନର ସନ୍ଧାନ ଜାଣନ୍ତି । ମୋତେ କେତେଥର ସେମାନେ ସେ ଧନ ଦେଇଛନ୍ତି । କିନ୍ତୁ..."

"କିନ୍ତୁ କ'ଣ ?" ହରିହର ପଚାରିଲା ।

ଲୋକଟି ରାଗିଯାଇ କହିଲା, "ଚୋପ୍! ମୋର କେଉଁ ଗରଜ ଅଛି ତୋତେ ସେକଥା କହିବା ପାଇଁ ? ତୁ ଯାଇ ନିଜେ ଦେଖୁନୁ ?" ଏହାପରେ ଲୋକଟା ହରିହରକୁ ଗାଳି ଦେବାକୁ ଲାଗିଲା । ଗୋଟାଏ ପାଗଳର ପ୍ରଳାପ ବୋଲି ହରିହର ସେ ଗାଳିଗୁଲାକରେ ମନ

ଅତି ଲୋଭେ ହତ ଲଙ୍କା




ଖରାପ କଲା ନାହିଁ ସିନା, କିନ୍ତୁ ଭୂତମାନଙ୍କ-ଠାରୁ ଟଙ୍କା ମିଳିବା ସମ୍ଭବ, ଏକଥାଟି ଭୁଲି ପାରିଲା ନାହିଁ ।

ରାତିରେ ସେ ବଣ ଭିତରେ ପଶିଲା ଓ ଦମ୍ଭ ଧରି ଭଙ୍ଗା ଦେଉଳ ପାଖରେ ଥିବା ବରଗଛଗୁଡ଼ିକ ଆଡ଼େ ଗଲା । ଜହ୍ନରାତି ହୋଇଥାଏ । ତେଣୁ ସବୁ ଦେଖା ଯାଉଥାଏ । ସେ ଦେଖିଲା, କୋଉଠାଏ ଧୋବଧାଉଳିଆ ଭୂତ ବରଗଛରୁ ଓହଳୁଛି ।

ହରିହର ଗଛ ମୂଳରେ ବସିପଡ଼ି କାନ୍ଦି ବୋବାଳି ଛାଡ଼ିଲା । ଭୂତ ସଙ୍ଗେ ସଙ୍ଗେ ଓହ୍ଲାଇ ଆସି ଦରଦୀ ଗଳାରେ ପଚାରିଲା, "ଏ ଭାଇ, କଥା କ'ଣ ? କାହିଁକି କାନ୍ଦୁଛୁ ? ମୁଁ କାହାର ଦୁଃଖ ସହିପାରେ ନାହିଁ । କ'ଣ ହୋଇଛି କହ !"

ହରିହର ମିଛରେ ଗୁଡ଼ାଏ ଦୁଃଖ କାହାଣୀ ଗପିଲା ଓ କହିଲା, "ପଇସାପତ୍ର ଅଭାବରେ ମୁଁ ଏପରି ହରକତ୍ ହେଲିଣି ଯେ ଆଉ ବଞ୍ଚି ରହିବା ପାଇଁ ମୋର ତିଳେ ହି ଅଭିଳାଷ ନାହିଁ ।"

"ପଇସା ଦରକାର ? ଏଇ କଥା ? କହୁନୁ ?" ଏହା କହି ଭୂତ ଦୌଡ଼ିଯାଇ କୋଉଠାଏ ଅନ୍ଧାରୁଆ ସ୍ଥାନରୁ ହାଣ୍ଡିଟିଏ ନେଇ ଆସିଲା । ତହିଁ ଭିତରେ ଥାଏ ସୁନା ଟଙ୍କା ।

"ଏଇଟା ନେଇ ଯା । ଏଥିରେ ତୋ'ର ସବୁ ଦୁଃଖ ମେଣ୍ଟିଯିବ ।" ଭୂତ ତା' ହାତକୁ ତାହା ବଢ଼ାଇ ଦେଇ କହିଲା ।

ହାଣ୍ଡି ଭିତରକୁ ଚାହିଁଦେଇ ହରିହରର ଆଖି ଖୋସି ହୋଇଗଲା । "ଭୂତ ଭାଇ ! ତମକୁ କେମିତି ଧନ୍ୟବାଦ ଦେବି ତାହା ବୁଝିପାରୁ ନାହିଁ !"

ଭୂତ ହସିଲା ଓ କହିଲା, "ନା, ନା, ଚିନ୍ତା ନାହିଁ । ମୁଁ କାହାର ଦୁଃଖ ସହିପାରେ ନାହିଁ । ତେଣୁ ଏହା ଦେଲି । ଏହା ମୋର ସ୍ୱଭାବ । ସେପାଇଁ ତମେ ଧନ୍ୟବାଦ ଦେବା ଦରକାର ନାହିଁ ।"

ହରିହର ହାଣ୍ଡି ଧରି କେଇପାଦ ଯାଇଛି, ଆଉ ଦୁଇଟା ଭୂତ ତା' ଆଡ଼େ ମାଡ଼ି ଆସି

ହାଣ୍ଡି ଭିତରକୁ ଅନାଇଲେ ଓ କହିଲେ, "ଆରେ, ଆରେ, ଏ ଲୋକଟା କେଡ଼େ ଭାଗ୍ୟବାନ! ହାଣ୍ଡି ଏ ସୁନା ଟଙ୍କା ପାଇଗଲା!" ଏହା କହି ସେମାନେ ହାଣ୍ଡିଟି ଧରି ଝିଙ୍କି-ଦେବା ମାତ୍ରେ ତାହା ମାଟିରେ ପରିଣତ ହୋଇଗଲା ଓ ତହିଁ ଭିତରେ ଥିବା ସୁନା ଟଙ୍କାତକ ଖପରା ପାଲଟି ଗଲା।

ହରିହରର ମନଦୁଃଖ କଥା କହିଲେ ନ ସରେ। ସେ ପଛକୁ ଫେରି ଚାହିଁଲା। ତାକୁ ସାହାଯ୍ୟ କରିଥିବା ଭୂତ ଆଜି ସେଠାରେ ନଥିଲା। ସେ ହତାଶ ହୋଇ ଘରକୁ ଫେରିଲା।

ପରଦିନ ସେ କାମକୁ ଗଲା ନାହିଁ। ପୁଣି କେମିତି ରାତି ହେବ ଓ ସେ ଯାଇ ଉପକାରୀ ଭୂତଟିକୁ ଭେଟିବ, ସେହି କଳ୍ପନାରେ ଦିନଟି କଟିଲା।

ମଝି ରାତିରେ ସେ ଯାଇ ଭଙ୍ଗା ଦେଉଳ ପାଖରେ ପହଞ୍ଚିବା ବେଳକୁ ଭୂତଟି ଝୁଲୁଛି। ସେ ଗତ ରାତିରେ ତାକୁ ଅନ୍ୟ ଦୁଇ ଭୂତ କିପରି ହଇରାଣ କଲେ ସେକଥା ଗପିଲା।

"ଠିକ୍ ଅଛି। ମୁଁ ଆଉ ଥରେ ଦେଉଛି।" ଏହା କହି ଭୂତ ପୁଣି ଗୋଟାଏ ସୁନାଭର୍ତ୍ତି ହାଣ୍ଡି ଆଣି ଦେଲା।

ହରିହର ଏଥର ଭିନ୍ନ ବାଟ ଦେଇ ବଣରୁ ବାହାରିବାର ଉଦ୍ୟମ କଲା। କିନ୍ତୁ ଅନ୍ୟ ଭୂତ ଦୁଇଟି ଆସି ପହଞ୍ଚିଗଲେ। ଜଣେ କହିଲା, "ଆରେ, ଇଏତ ପୁଣି କ'ଣ ସୁନାଭର୍ତ୍ତି ହାଣ୍ଡି ପାଇଗଲାଣି!"



ଅନ୍ୟଜଣକ କହିଲା, "ସୁନାହାଣ୍ଡି ? ନା, ଭ, ମୁଁ ତ ତା' ହାତରେ ଗୋଟାଏ ଡାଉଲ, ଡାଉଲ୍ ପେଚା ଛଡ଼ା ଆଉ କିଛି ଦେଖୁ ନାହିଁ!"

ସଙ୍ଗେ ସଙ୍ଗେ ହରିହର ହାତରେ ଥିବା ହାଣ୍ଡି ଗୋଟାଏ ପେଚାରେ ପରିଣତ ହୋଇଗଲା । ସେ ତାକୁ ଛାଡିଦେଲା ଓ ପେଚା ଉଡ଼ି ପଳାଇଲା ।

ହରିହର ପୁଣି ହତାଶ ହୋଇ ଘରକୁ ଫେରିଲା । ପରଦିନ ବି ସେ କାମକୁ ଗଲା ନାହିଁ । ରାତି ହେବାରୁ ବଣ ଭିତରେ ପଶି ସେ ଉପକାରୀ ଭୂତର ସନ୍ଧାନ କଲା । ଉପକାରୀ ଭୂତ ସହ ଦେଖା ହେବା ମାତ୍ରେ ସେ ରାଗିଯାଇ ଅନ୍ୟ ଦୁଇ ଭୂତଙ୍କ ବିରୁଦ୍ଧରେ ଅଭିଯୋଗ କଲା ଓ କହିଲା, "ତମେ ମୋତେ ଖାଲି ସୁନା ଭର୍ତ୍ତି ହାଣ୍ଡି ଦେଲେ ଚଳିବ ନାହିଁ, ମୋ ସହ ଆସି ବଣ ପାର କରିଦେଇ ଯାଅ !"

ଭୂତ ହସିଲା ଓ କହିଲା, "କଥା କ'ଣ କି, ମୁଁ ଯେମିତି କାହାରି ଦୁଃଖ ସହିପାରେ ନାହିଁ, ସେ ଭୂତ ଦୁଇଟି ସେମିତି କାହାରି ସୁଖ ସହି ପାରନ୍ତି ନାହିଁ ।"

"ସେକଥା ତ ବୁଝୁଛି । କିନ୍ତୁ ତମେ ମୋତେ ତମ ଦାନ ସହ ବଣ ବାହାରେ ଛାଡ଼ି ଦେଇପାରିବ ନା ନାହିଁ ?" ହରିହର ଅଧୈର୍ଯ୍ୟ ହୋଇ ପଚାରିଲା ।

"ତା' କେମିତି ହେବ ? ସେ ଭୂତ ଦୁଇଟି ସେମାନଙ୍କ କାମ ନ କରିପାରିଲେ ଭୀଷଣ ଦୁଃଖ ପାଇବେ । ମୁଁ ସେମାନଙ୍କ ଦୁଃଖ ସହିବି କିପରି ?" ଭୂତଟି ଏହା କହି ହସିଲା । ତା' ଅଟ୍ଟହାସ୍ୟରେ ଯୋଗ ଦେଲେ ଅନ୍ୟ ଦୁଇ ଭୂତ । ତିନି ଅଟ୍ଟହାସ୍ୟରେ ହରିହରର କାନ ଅତଡ଼ା ପଡ଼ିଗଲା । ସେ ଦୌଡ଼ି ଦୌଡ଼ି ବଣ ଛାଡ଼ି ପଳାଇଲା । ଘରକୁ ଯାଇ ସତକୁ ସତ ସେ କାନ୍ଦି ପକାଇଲା । ତିନିଦିନର ଆୟ ସେ ହରାଇଛି । ଏତେବେଳକୁ ସେ ବୁଝିଲା, ସେ ଅଧାପାଗଳିଆ ଲୋକଟା କାହିଁକି 'କିନ୍ତୁ' ବୋଲି କହି ଚୁପ୍ ହୋଇ ଯାଉଥିଲା !





# କୃଷ୍ଣାବତାର

ଶ୍ରୀକୃଷ୍ଣ ଓ ବଳରାମଙ୍କ ପରାମର୍ଶ କ୍ରମେ ଗୋକୁଳ-ନିବାସୀମାନେ ସମସ୍ତେ ନିଜ ନିଜ ସ୍ଥାନ ଛାଡ଼ି କିଛି ଦୂରବର୍ତ୍ତୀ ସ୍ଥାନ ଅଭିମୁଖେ ଚାଲିଲେ। ସେ ନୂତନ ସ୍ଥାନ ଥିଲା ଅତ୍ୟନ୍ତ ମନୋରମ। ଯମୁନା ନଦୀ କୂଳରେ ଅସଂଖ୍ୟ ଫଳ ପୁଷ୍ପମୟ ବୃକ୍ଷଲତାରେ ସେ ସ୍ଥାନ ଶୋଭା ପାଉଥିଲା। ସେଠାରେ ଛଅଟିଯାକ ଋତୁ ନିଜ ନିଜ ବିଶେଷତ୍ୱ ପ୍ରଦର୍ଶନ କରୁଥିଲେ। ପକ୍ଷୀମାନଙ୍କ କୂଜନରେ ସେ ସ୍ଥାନ ସର୍ବଦା ମୁଖରିତ ହେଉଥିଲା। ବିଶେଷତଃ ବସନ୍ତ କାଳରେ ସେ ସ୍ଥାନର ଶୋଭା ଅବର୍ଣ୍ଣନୀୟ ହେଉଥିଲା। ସେ ସ୍ଥାନ ନିର୍ବାଚନ କରିଥିବା ହେତୁ କୃଷ୍ଣ ବଳରାମ ସମସ୍ତଙ୍କର ଶ୍ରଦ୍ଧାଭାଜନ ହେଲେ। ସେ ସ୍ଥାନର ନାମ ହେଲା ବୃନ୍ଦାବନ।

ପ୍ରଥମେ ପ୍ରଥମେ କେହି କେହି ନିଜ ନିଜର ପୁରୁଣା ସ୍ଥାନ ଛାଡ଼ି ଅନ୍ୟ ସ୍ଥାନକୁ ଆସିବା ନିମନ୍ତେ ବିଶେଷ ଆଗ୍ରହୀ ନଥିଲେ। ଜନ୍ମ ଗାଁର ମୋହ ଛାଡ଼ିବା କ'ଣ ସହଜ? କିନ୍ତୁ ସମସ୍ତେ ଯେତେବେଳେ ଆସିବାକୁ ପ୍ରସ୍ତୁତ ହେଲେ, ସେମାନେ ବା କରିବେ କ'ଣ? ବିଶେଷତଃ ନନ୍ଦ ରାଜା ଯେପରି ବିବେକୀ, ସେହିପରି ଦୂରଦର୍ଶୀ। ସେ ଯେତେବେଳେ ସମସ୍ତଙ୍କୁ ସ୍ଥାନ ଛାଡ଼ି ନୂଆ ଅଞ୍ଚଳକୁ ଉଠିଯିବାକୁ ନିର୍ଦ୍ଦେଶ ଦେଲେ, ସେତେବେଳେ ସେମାନେ ଆଉ ଆପତ୍ତି କଲେ ନାହିଁ। ତେବେ ନୂଆ ସ୍ଥାନରେ କିପରି ଚଳିବେ, ସେ ବିଷୟରେ ସେମାନଙ୍କ ମନରେ ସନ୍ଦେହ ରହିଥିଲା। ବର୍ତ୍ତମାନ ସେ ସନ୍ଦେହ ଯେ ଖାଲି ଦୂର ହେଲା,



ତାହା ନୁହେଁ, ସେମାନେ ଆନନ୍ଦରେ ଆତ୍ମହରା ହୋଇ ରହିଲେ । ବାରମ୍ବାର ନନ୍ଦ ରାଜାଙ୍କୁ ଧନ୍ୟବାଦ ଜଣାଇଲେ ।

ଗୋପ ଗୋପୀମାନେ ସେଠାରେ ପହଞ୍ଚି ବସତି ସ୍ଥାପନ ଆରମ୍ଭ କଲେ । ପ୍ରବଳ ଉତ୍ସାହରେ ସେମାନେ ସେ ସ୍ଥାନକୁ ବାସଯୋଗ୍ୟ କରିବାରେ ଲାଗି ପଡ଼ିଲେ । ଶ୍ରୀକୃଷ୍ଣ ବଳରାମଙ୍କ ନେତୃତ୍ୱରେ ଗୋପବାଳକମାନେ ସବୁଠୁଁ ଅଧିକ କର୍ମ ତତ୍ପର ହେଉଥାନ୍ତି । ସୂର୍ଯ୍ୟାସ୍ତ ବେଳକୁ କାମଦାମ ସ୍ଥଗିତ ରଖି ସେମାନେ ଯମୁନା କୂଳକୁ ଚାଲି ଯାଉଥିଲେ । ସେଠାରେ ଶ୍ରୀକୃଷ୍ଣଙ୍କର ଅପୂର୍ବ ବଂଶୀଧ୍ୱନୀ ଶୁଣି ସେମାନେ ମୁଗ୍‌ଧ ହୋଇ ରହୁଥିଲେ; ନହେଲେ ନୃତ୍ୟ କରୁଥିଲେ; ନହେଲେ ଲୁଚକାଳି ଖେଳ ଖେଳୁଥିଲେ । କୃଷ୍ଣଙ୍କ ବଂଶୀ ଧ୍ୱନୀରେ ଯମୁନା ନଦୀର ଜଳରାଶି ମଧ୍ୟ ଉଦ୍‌ବେଳିତ ହେଉଥିଲେ । ଗଛଲତାମାନଙ୍କରେ ଅଧିକ ପୁଷ୍ପ ଫୁଟୁଥିଲେ ଓ ସେସବୁର ମହକ ମଧ୍ୟ ଅଧିକ ହେଉଥିଲା । କେତେବେଳେ ସୂର୍ଯ୍ୟାସ୍ତ ସମୟ ହେବ ଏବଂ କୃଷ୍ଣ ବଂଶୀ ବଜାଇବେ, ସମସ୍ତେ ତାହା ପ୍ରତି ଉତ୍କର୍ଣ୍ଣ ହୋଇ ରହୁଥାନ୍ତି । ଗୋପବାଳକମାନଙ୍କର ପ୍ରାଣର ସଖା ଓ ନେତା ରୂପେ କୃଷ୍ଣ ସେମାନଙ୍କ ହୃଦୟରେ ସ୍ଥାନ ଗ୍ରହଣ କରିଥାନ୍ତି ।

ସେମାନେ କେତେ ଅଦ୍ଭୁତ କଥା ଲକ୍ଷ୍ୟ କରୁଥାନ୍ତି । ଯେତେବେଳେ କୃଷ୍ଣ ଗୋଟିଏ ନିର୍ଦ୍ଦିଷ୍ଟ ସ୍ୱରରେ ବଂଶୀବାଦନ କରୁଥିଲେ, ସେତେବେଳେ ଗୋରୁଗାଈମାନେ ଯୁଆଡ଼େ ଥିଲେ ମଧ୍ୟ ଫେରି ଆସୁଥିଲେ । ବିଶେଷତଃ ବାଛୁରୀମାନେ ଏପରି ଉତ୍‌ଫୁଲ୍ଲ ହୋଇ ନାଚି-କୁଦି ତାଙ୍କ ପାଖକୁ ଆସି ତାଙ୍କୁ ବେଷ୍ଟନ କରି ରହୁଥିଲେ ଯେ ସେ ଦୃଶ୍ୟ ଯିଏ ଦେଖୁଥିଲା, ତା' ମନ ଆନନ୍ଦରେ ପୂରି ଯାଉଥିଲା ।

ଗୋପବାଳକମାନେ ଯେତେବେଳେ କୃଷ୍ଣଙ୍କ ଗହଣରେ ରହୁଥିଲେ, ସେତେବେଳେ ସେମାନଙ୍କର ମନେ ହେଉଥିଲା, ପୃଥିବୀରେ ସତେ ଅବା ସେମାନଙ୍କର ଆଉ କିଛି ପ୍ରୟୋଜନ ନାହିଁ! ଜୀବନର ଲକ୍ଷ୍ୟ ସ୍ଥାନରେ ସେମାନେ ପହଞ୍ଚି ସାରିଛନ୍ତି, ସେମାନଙ୍କର ଏହି ଧାରଣା

ହେଉଥିଲା । ରାତିହେଲେ ଯିଏ ଯାହା ଘରକୁ ଫେରି ଯାଉଥିଲେ ସତ, କିନ୍ତୁ କେବେ ସକାଳ ହେବ ଓ ସେମାନେ ପୁଣି କୃଷ୍ଣଙ୍କୁ ଭେଟିବେ, ସେମାନେ ସେହି ସୁଯୋଗକୁ ଅପେକ୍ଷା କରି ରହୁଥିଲେ । ରାତିରେ ସେମାନେ କୃଷ୍ଣଙ୍କୁହିଁ ସ୍ୱପ୍ନରେ ଦେଖୁଥିଲେ । କୃଷ୍ଣ ତାଙ୍କର ସବୁ ଖେଳସାଥୀଙ୍କ ପ୍ରତି ସମାନ ସ୍ନେହପୂର୍ଣ୍ଣ ବ୍ୟବହାର କରୁଥିଲେ । ଯାହା ପ୍ରତି ଅନାଇ ସେ ଯେଉଁଦିନ ଥରେ ହସି ଦେଉଥିଲେ, ସେଦିନ ସେ ପରମ ଆନନ୍ଦରେ ରହୁଥିଲା ।

ଆନନ୍ଦରେ ସମସ୍ତେ ସମୟ ଅତିବାହିତ କରୁଥିଲେ । କିନ୍ତୁ ଅପ୍ରତ୍ୟାଶିତ ଭାବରେ ଦେଖାଦେଲା ଗୋଟିଏ ବିପଦ । କୌଣସି ଅଜଣା ରୋଗରେ ସମସ୍ତଙ୍କର ସ୍ୱାସ୍ଥ୍ୟହାନୀ ହେବାକୁ ଲାଗିଲା । ଗୋରୁ ଗାଈମାନେ ମଧ୍ୟ ରୋଗାକ୍ରାନ୍ତ ହେଲେ । ଗୋପମାନେ ଯେତେ ପ୍ରକାର ଚିକିତ୍ସାବିଦ୍ୟା ଜାଣିଥିଲେ, ସବୁ ପ୍ରୟୋଗ କରାଗଲା, କିନ୍ତୁ କିଛି ଫଳ ହେଲା ନାହିଁ । ଲୋକମାନେ ଯାଇ କୃଷ୍ଣ ବଳରାମଙ୍କୁ ବାରମ୍ବାର ସେମାନଙ୍କ ବିପତ୍ତି କଥା କହିଲେ । କୃଷ୍ଣ ବଳରାମ ସେମାନଙ୍କୁ କହିଲେ, "ବୋଧହୁଏ ଏ ସ୍ଥାନ ଉପରକୁ ଅତ୍ୟନ୍ତ ସ୍ୱାସ୍ଥ୍ୟକର ଓ ମନୋରମ ହେଲେ ମଧ୍ୟ ଏହା ଉପରେ କୌଣସି ଅଭିଶାପ ରହିଛି । ଆମେ ସେ ବିଷୟରେ କିଛି ଜାଣି ନଥିଲୁଁ । ଆମ ପକ୍ଷରେ ଏ ଅଞ୍ଚଳ ଛାଡ଼ି ବହୁ ଦୂରକୁ ଚାଲିଯିବା ମଙ୍ଗଳକର ହେବ ।"



ଏକଥା ଯେତେବେଳେ ନନ୍ଦ ଓ ଯଶୋଦା ଶୁଣିଲେ, ସେମାନେ କହିଲେ "ନା, ତାହା ସମ୍ଭବପର ନୁହେଁ । ବାରମ୍ବାର ଭିଟାମାଟି ପରିବର୍ତ୍ତନ କରିବା ଉଚିତ ନୁହେଁ । ରୋଗ ବ୍ୟାଧି ଯାହା ହେଉ, ଯେଉଁ ପ୍ରକାର ବିପଦ ଆସୁ, ଏହି ସ୍ଥାନରେ ରହି ତା'ର ମୁକାବିଲା କରିବାକୁ ପଡ଼ିବ । ତା' ଛଡ଼ା ଆମ ରୋଗର କାରଣ ମାଟିରେ ନଥାଇ ଅନ୍ୟ କାହିଁ ଥାଇ ପାରେ । ସେ ଦିଗରେ ପ୍ରଥମେ ଯଥେଷ୍ଟ ଅନୁସନ୍ଧାନ ହେବା ଆବଶ୍ୟକ ।"

ନନ୍ଦଙ୍କର ଏ ବାଣୀ ଜଣେ ଜ୍ଞାନୀ ଲୋକର ବକ୍ତବ୍ୟ ବୋଲି କୃଷ୍ଣ ବଳରାମ ବୁଝିଲେ ଓ ଏହା ଉପରେ କଥା କହିଲେ ନାହିଁ । ତେବେ



ଏହାପରେ ନନ୍ଦରାଜା ନିଜେ ଏ ସମସ୍ୟା ଉପରେ ବିଶେଷ ଧାନ ଦେଲେ । କୃଷ୍ଣ ବଳରାମ ତାହାହିଁ ଚାହୁଁଥିଲେ । ମାତା ଯଶୋଦାଙ୍କ ପିତୃ ରାଜ୍ୟରେ ଜଣେ ଶିବଭକ୍ତ ପୂଜକ ଥିଲେ । ସେ ପୂଜକ ଥରେ ଥରେ ଆବିଷ୍ଟ ଭାବରେ ଅନେକ ଅଜଣା ରହସ୍ୟ ପ୍ରକଟ କରିପାରୁଥିଲେ । ଯଶୋଦାଙ୍କ ପରାମର୍ଶ କ୍ରମେ ତାଙ୍କୁ ନିମନ୍ତ୍ରଣ କରାଗଲା ।

ଶିବଭକ୍ତ ପୂଜକ ଆସି କିଛି ସମୟ ପୂଜା ଓ ମନ୍ତ୍ରପାଠ କରି ଧାନରେ ବସିଲେ । ତା'ପରେ ତାଙ୍କ ଶରୀର କମ୍ପମାନ ହେବାର ଦେଖାଗଲା । ସେ ଆବିଷ୍ଟ ଭାବରେ ଉଠି ନୃତ୍ୟ କଲେ ଓ ତା'ପରେ କହିଲେ, "ଶୁଣ ସମସ୍ତେ, ଯମୁନା ତଟରେ ଗୋଟିଏ ବିଶାଳ ଅଚିହ୍ନା ବୃକ୍ଷ ଦେଖି-ବାକୁ ପାଇବ । ସେ ବୃକ୍ଷ ବା ତା'ର ଫଳ ତମେମାନେ କେହି କେବେ ଦେଖି ନଥିବ । ସେ ଗଛକୁ ବେଷ୍ଟନ କରି ରହିଛି ଏକ ପ୍ରକାର ଘାସ, ଯାହା ଉପରେ ଚାଲିଲେ ମଣିଷ ମାନେ ନିର୍ଜୀବ ହୋଇଯିବ । ବାସ୍ତବରେ ସେ ବୃକ୍ଷ କାଳକଳ ନାମକ ରାକ୍ଷସ । ସେ ଘାସମାନେ ତାହାରି ଅନୁଚର । ଯେତେବେଳେ ପବନ ସେ ବିଷବୃକ୍ଷ ଉପରେ ସଞ୍ଚରଣ କରିସାରି ଏ ଜନପଦ ଭିତରେ ଆସି ପହଞ୍ଚୁଛି ଓ ତମେମାନେ ଓ ଗୋରୁଗାଈମାନେ ସେ ପବନକୁ ନିଃଶ୍ୱାସରେ ଗ୍ରହଣ କରୁଛ, ସେତେବେଳେ ଅସୁସ୍ଥ ହେଉଛ । ସେ ବିଷବୃକ୍ଷ ଉତ୍ପାଟନ କରି ତାକୁ ଭସ୍ମିଭୂତ ନକଲା ଯାଏ ରୋଗବ୍ୟାଧିରୁ ମୁକ୍ତି ମିଳିବ ନାହିଁ ।"

ବର୍ତ୍ତମାନ ଜନପଦ ଭିତରେ କାହିଁକି ରୋଗବ୍ୟାଧି ବ୍ୟାପୁଛି, ସେକଥା ମଧ୍ୟ ସ୍ପଷ୍ଟ ହୋଇଗଲା । ଲୋକମାନେ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ନାନା ପ୍ରକାର ବିପଦ ଅଙ୍ଗେ ନିଭେଇଥିଲେ ସତ, କିନ୍ତୁ ରାକ୍ଷସଟିଏ ଓ ତା'ର ଅନୁଚରମାନେ ଏଭଳି ଅଦ୍ଭୁତ ଉପାୟରେ ବୃକ୍ଷ ରୂପରେ ଜନ୍ମ ନେଇ ସେମାନଙ୍କୁ କଲବଲ କରିବେ, ଏକଥା ସେମାନେ କଳ୍ପନା କରି ନଥିଲେ । ଆବିଷ୍ଟ ଭାବରେ ସେ ଶିବଭକ୍ତ ଏକଥା ପ୍ରକଟ କରି ନଥିଲେ କେହି କୌଣସି ମତେ ଏହା ଜାଣିପାରି ନଥାନ୍ତା ।



ବର୍ତ୍ତମାନ ବୃକ୍ଷ-ରୂପୀ ସେ ରାକ୍ଷସର ବିନାଶ ସାଧନ ହେବ କିପରି, ଏହାହିଁ ହେଲା ସେମାନଙ୍କର ଚିନ୍ତାର ବିଷୟ । ସେମାନେ କୌଣସି ମତେ ଏହାର ଉପାୟ ସ୍ଥିର କରି ପାରିଲେ ନାହିଁ । ଖାଲି ପରସ୍ପର ଆଲୋଚନା କରିବାରେ ଲାଗିଲେ ।

ଏପରି କି ନନ୍ଦ ରାଜା ମଧ୍ୟ କିପରି କ'ଣ କରାଯିବ, ସେକଥା ହଠାତ୍ ନିରୂପଣ କରି ପାରିଲେ ନାହିଁ । କିନ୍ତୁ କୃଷ୍ଣ ବଳରାମ ସେ ଦିଗରେ କ'ଣ କରିବେ, ତାହା ସଙ୍ଗେ ସଙ୍ଗେ ସ୍ଥିର କରି ସାରିଥିଲେ । କୃଷ୍ଣ ବଳରାମ ଗୋପ-ବାଳକ ତଥା କେତେଜଣ ବଳବାନ ଲୋକଙ୍କୁ ଧରି ସେ ବିଷବୃକ୍ଷର ସନ୍ଧାନରେ ବାହାରିଲେ ।

ଯମୁନା କୂଳରେ ଗୋଟିଏ ଅଞ୍ଚଳରେ ଗହନ ବନ ଥିଲା । ସାଧାରଣତଃ ଲୋକେ ସେ ବନ ଭିତରେ ପ୍ରବେଶ କରୁ ନଥିଲେ । କାରଣ ତହିଁ ଭିତରେ ମାରାତ୍ମକ ଜୀବଜନ୍ତୁ ରହୁଥିଲେ । କୃଷ୍ଣ ବଳରାମ ତାଙ୍କ ଦଳକୁ ନେଇ ବର୍ତ୍ତମାନ ସେହି ବନ ଭିତରେ ପ୍ରବେଶ କଲେ । ପ୍ରଥମେ ପ୍ରଥମେ ବନ ଭିତର ଦେଇ ଅଗ୍ରସର ହେବା କାଠିକର ହେଲା । ତା'ପରେ ଦେଖାଗଲା, ତାହା ସେତେ ଗହନ ନୁହେଁ । ବନ୍ୟ ଜନ୍ତୁମାନେ ମଣିଷର ପାଦଶବ୍ଦ ଓ କଣ୍ଠସ୍ୱର ଶୁଣି ଦୂରକୁ ଦୂରକୁ ପଳାଇ ଯାଉଥାନ୍ତି, ଏକଥା ଜଣାପଡ଼ି ଯାଉଥାଏ । କେହି କେହି ଗୋପ-ବାଳକ ଥରେ ଥରେ ଡ଼ରି ଯାଉଥାନ୍ତି, କିନ୍ତୁ କୃଷ୍ଣ ବଳରାମ ଆଗେ ଆଗେ ଚାଲୁଥିବାରୁ ସେମାନେ ସାହସ ସହକାରେ ଚାଲୁଥାନ୍ତି । ବିଷବୃକ୍ଷକୁ ଆବିଷ୍କାର କରିବାକୁ ବିଶେଷ କଷ୍ଟ ହେଲା ନାହିଁ । କାରଣ ସେ ବୃକ୍ଷ ଦେହରୁ ଏକ ପ୍ରକାର ଭୀଷଣ ଶବ୍ଦ ବାହାରୁଥିଲା । ସେଥିରେ ଜଣେ ସାଧାରଣ ଲୋକ ଚେତା ହରାଇବ । କିନ୍ତୁ ସେ ବାଳକଦଳ ଅସାଧାରଣ ସାହସୀ ଥିଲେ । ସେମାନେ ପ୍ରଥମେ ବୃକ୍ଷକୁ ଘେରି ରହିଥିବା ଘାସମାନଙ୍କୁ କାଟି କାଟି ରାସ୍ତା ତିଆରି କରି ଅଗ୍ରସର ହେଲେ । ହଠାତ୍ ସେମାନଙ୍କ ଆଗରେ ଦେଖାଦେଲା ଆଉ ଗୋଟାଏ ନୂଆ ଅସୁବିଧା । କାହୁଁ କେଜାଣି ଦଳେ ଗୋରୁ ଆସି ସେ ଗଛକୁ ଘେରି ଗଲେ । ସେମାନଙ୍କୁ

ନ ମାରିଲେ ଗଛ ପାଖକୁ ଯିବା ସହଜ ନୁହେଁ, କିନ୍ତୁ ଗୋହତ୍ୟା କରିବାକୁ ସେମାନେ ପ୍ରସ୍ତୁତ ନଥିଲେ । ଯାହାହେଉ, କୃଷ୍ଣ ବଳରାମ ସେ ଗୋରୁମାନଙ୍କର ବାଧାଦାନ ସତ୍ତ୍ୱେ ସେମାନଙ୍କ ଭିତର ଦେଇ ଅଗ୍ରସର ହୋଇ ବରବୃକ୍ଷରେ ଦୁଇ ଗୋଟି ପକାଇଲେ । ସଙ୍ଗେ ସଙ୍ଗେ କେତୋଟି ଗୋରୁ ରାକ୍ଷସରେ ପରିଣତ ହୋଇ ତଳେ ପଡିଗଲେ । ବର୍ତ୍ତମାନ ବୁଝାଗଲା ଯେ ସେମାନେ ବାସ୍ତବିକ ଗୋରୁ ନୁହନ୍ତି, ଗୋରୁ ରୂପୀ ରାକ୍ଷସ । ଅତଏବ ଗୋପବାଳକମାନେ ସେମାନଙ୍କୁ ଚିହ୍ନିଲେ । ସେମାନେ ମଧ୍ୟ ନିଜ ନିଜ ରୂପ ଧାରଣ କରି ତଳେ ପଡି ଯାଉଥାନ୍ତି । ଏଣେ କୃଷ୍ଣ ବଳରାମ ବରବୃକ୍ଷ ଉପରେ ଗୋଟି ପରେ ଗୋଟି ମାରି ଚାଲିଥାନ୍ତି । ସମଗ୍ର ଗଛ କଣ୍ଠା ହୋଇଗଲା । ତହିଁ ଉପରେ ଶୁଖିଲା ପତ୍ରମାନ ଠୁଳ କରି ନିଆଁ ଲଗାଇ ଦିଆଗଲା । ନିଆଁ ଦାଉ ଦାଉ ଜଳି ଉଠିଲା । ଅଦୂରରେ ଠିଆ ହୋଇ ଗୋପବାଳକମାନେ ସେ ଦୃଶ୍ୟ ଦେଖିଲେ । ନିଆଁ ଲିଭିଯିବା ପରେ ସେମାନେ ଯାଇ ଯମୁନା ଜଳରେ ସ୍ନାନ କଲେ । ସେମାନଙ୍କ ଆନନ୍ଦ ଯେତିକି, ବୃନ୍ଦାବନବାସୀମାନଙ୍କ ଆନନ୍ଦ ବି ସେତିକି । ସେ ରାକ୍ଷସ-ଦମନ ଅଭିଯାନରେ ଯାଇ ବାଳକମାନେ ବହୁତ ହାଲିଆ ହୋଇ ଯାଇଥିଲେ । ତେଣୁ ଗୋପନାରୀମାନେ ସେମାନଙ୍କ ପାଇଁ ଖାଦ୍ୟ ଦ୍ରବ୍ୟ ସବୁ ନଦୀକୂଳକୁ ନେଇ



ଆସିଲେ । ସ୍ନାନ ସାରି ସେମାନେ ସେହିଠାରେ ଭୋଜନ କଲେ ।

ଏହାପରେ ବୃନ୍ଦାବନରୁ ଅସୁସ୍ଥତାର ବାତାବରଣ ଦୂର ହୋଇଗଲା । ବୃନ୍ଦାବନ ଗୋଟିଏ ଆଦର୍ଶ ଓ ସୁନ୍ଦର ବସତିରେ ପରିଣତ ହେଲା ।

ବୃନ୍ଦାବନବାସୀମାନେ ଯିନା ସୁଖରେ ରହିଲେ, ଯଶୋଦାଙ୍କ ପିତୃ ରାଜ୍ୟ ମିଥିଳାର ଏକ ଅଞ୍ଚଳରେ ଦେଖାଦେଲା ଗୋଟିଏ ସମସ୍ୟା । ଯଶୋଦାଙ୍କ ଭାଇ କୁମ୍ଭକ ଜଣେ ବୀର ଓ ମହତ୍ ବ୍ୟକ୍ତି ଥିଲେ । ଯେତେବେଳେ ଦାନବ ତାରକାସୁର ପ୍ରବଳ ହୋଇ ସମସ୍ତଙ୍କର ଭୀଷଣ କ୍ଷତି କରୁଥିଲା, ସେତେବେଳେ ଭଗବାନ ତାକୁ ନିଧନ କରିଥିଲେ । ସେହି ସମୟରେ

ଲୁମ୍ବକ ତାରକାସୁରର ସାତ ଦୁର୍ଦ୍ଦାନ୍ତ ପୁତ୍ରଙ୍କୁ ବଧ କରିଥିଲେ । ଏହି ସାତ ଦାନବ ସାତଗୋଟି ଷଣ୍ଢ ରୂପେ ଲୁମ୍ବକର ଗୋଶାଳାରେ ଜନ୍ମ ନେଇ ସେ ଅଞ୍ଚଳରେ ଭୀଷଣ ଉତ୍ପାତ ଆରମ୍ଭ କଲେ । ଲୋକେ ଉପୁଜାଉଥିବା ଶସ୍ୟ କ୍ଷେତ ସେମାନେ ଶୂନ୍ୟ କରିଦେବାକୁ ଲାଗିଲେ । ସେତିକି ନୁହେଁ, ସେମାନେ ଯାହାକୁ ଦେଖୁଥାନ୍ତି, ତାକୁ ଏଭଳି ପ୍ରଚଣ୍ଡ ଭାବରେ ଆକ୍ରମଣ କରି କ୍ଷତ ବିକ୍ଷତ କରି ଦେଉଥାନ୍ତି ଯେ ସେ ଲୋକ ହୁଏତ ମୃତ୍ୟୁ ବରଣ କରୁଥାଏ, ନହେଲେ ଛଙ୍ଗୁ ହୋଇ ଯାଉଥାଏ ।

କେତେଥର ଲୁମ୍ବକ ତାଙ୍କର ସହକାରୀମାନଙ୍କୁ ଧରି ଏ ସାତ ଷଣ୍ଢଙ୍କୁ ଦମନ କରିବାକୁ ବାହାରିଲେ, କିନ୍ତୁ ସେମାନଙ୍କୁ ଧରି ପାରିଲେ ନାହିଁ । ସେମାନେ କୌଣସି ସ୍ଥାନରେ ଲୁଚି ରହି ହଠାତ୍ ମଣିଷଙ୍କ ଉପରକୁ ମାଡ଼ି ଆସି ସମସ୍ତଙ୍କୁ ରକ୍ତାକ୍ତ କରିଦେଉଥାନ୍ତି, ନହେଲେ ବିଜୁଳି ବେଗରେ ଦୌଡ଼ି ପଳାଉଥାନ୍ତି ।

ଲୁମ୍ବକ ସେ ଅଞ୍ଚଳର ସବୁଠାରୁ ସମ୍ପନ୍ନ ଓ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ । ଲୋକେ ତାଙ୍କୁ ଶ୍ରଦ୍ଧା କରୁଥିଲେ । ଏବେ ତାଙ୍କ ଗୋଶାଳାରୁ ଏଭଳି ବିପଦ ଉପୁଜିବାର ଦେଖି ସେମାନେ କ'ଣ କରିବେ ବୁଝିପାରିଲେ ନାହିଁ । ଯେତେବେଳେ କୌଣସି ମତେ ସେମାନେ ଷଣ୍ଢମାନଙ୍କୁ ଦମନ କରିପାରିଲେ ନାହିଁ, ସେତେବେଳେ ଯାଇ ମିଥିଳାର ରାଜାଙ୍କୁ ସେମାନଙ୍କ ବିପଦ କଥା ଜଣାଇଲେ । ସେମାନେ କହିଲେ, "ମହାରାଜ, ଆଶ୍ଚର୍ଯ୍ୟର କଥା ହେଲା, ଲୁମ୍ବକ ଭଳି ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ଗୋଶାଳାରେ ଏପରି ଦୁର୍ଦ୍ଦାନ୍ତ ଷଣ୍ଢମାନଙ୍କର ଜନ୍ମ ହୋଇଛି । ଆମ୍ଭେମାନେ ନା ଲୁମ୍ବକଙ୍କୁ ଏ ସକାଶେ ଦାୟୀ କରି ପାରୁଛୁଁ, ନା ଷଣ୍ଢଙ୍କ କବଳରୁ ନିସ୍ତାର ପାଇ ପାରୁଛୁଁ । ମହାରାଜ! ଏଭଳି ବିପଦରେ ଆମ ପୂର୍ବପୁରୁଷମାନେ କେବେ ପଡ଼ିଥିବାର କାହିଁ ଆମେ ଶୁଣିନାହୁଁ । ଆପଣ ଆମକୁ ଏଥିରୁ ଉଦ୍ଧାର କରନ୍ତୁ ।"





# ସାହସିକ କାର୍ଯ୍ୟ

ହେମଗିରି ନାମରେ ଛୋଟିଆ ଗାଁଟିଏ ଥାଏ । ଦଶଜଣ ଡାକୁ ମିଶି ଗୋଟିଏ ଡାକୁଦଳ ଗଢ଼ିଥା'ନ୍ତି । ଗାଁ ପାଖରେ ଥିବା ବଣ ଭିତରେ ସେ ଡାକୁମାନେ ରହୁଥାନ୍ତି । ହେମଗିରି ଗାଁ ସେମାନଙ୍କର ଶିକାର କ୍ଷେତ୍ର ହୋଇଯାଇଥାଏ । ସେମାନେ ମଝିରେ ମଝିରେ ଏଇ ଗାଁକୁ ଆକ୍ରମଣ କରି ଗ୍ରାମବାସୀଙ୍କର ଧନସମ୍ପତ୍ତି ନେଇ ଯା'ଆନ୍ତି; ତା' ଛଡ଼ା ଜଣେ ଦୁଇଜଣ ସୁନ୍ଦରୀ ଝିଅ ଓ ଗୋଟିଏ ଦୁଇଟା ପିଲା ମଧ୍ୟ ଜବରଦସ୍ତି ନେଇ ଯା'ଆନ୍ତି । ସେମାନଙ୍କ ଅତ୍ୟାଚାର ଯୋଗୁ ଗ୍ରାମବାସୀମାନେ ଦୁଃଖ ଓ କଷ୍ଟରେ ଜୀବନ କାଟୁଥା'ନ୍ତି । କେହି କେହି ଭାବନ୍ତି ଯେ ବରଂ ଏ ଗ୍ରାମ ଛାଡ଼ି ଦୂରକୁ ଯାଇ ଅନ୍ୟ କେଉଁ ଗ୍ରାମରେ ବସବାସ କରନ୍ତେ । ସେମାନେ ଏ ବିଷୟରେ ଅନେକ ଭାବିଲେ; ଅବଶେଷରେ ଏ ଦାୟିତ୍ୱ ବୀରସେନ୍ ନାମକ ଏକ ଯୁବକ ଉପରେ ଦେଲେ । ସେ ଉପଯୁକ୍ତ ଗ୍ରାମ ଦେଖିବାକୁ ବାହାରି ପଡ଼ିଲା ।

ପ୍ରଥମେ ସେ ଯାଇ ଏକ ପଡ଼ୋଶୀ ଗ୍ରାମରେ ପହଞ୍ଚିଲା ଓ ସେଠାକାର ମୁଖିଆଙ୍କ ସହ ଦେଖାକରି ନିଜ ଗ୍ରାମର ଦୁଃଖ କଥା ଜଣାଇଲା । ସବୁ ଶୁଣି ମୁଖିଆ କହିଲେ, "ଦେଖ ଭାଇ, ଡାକୁମାନେ ଆସି ଯେତେବେଳେ ଦେଖିବେ ଯେ ହେମଗିରି ଗାଁ ଶୂନ୍ୟ ହୋଇ ଯାଇଛି ସେତେବେଳେ ସେମାନେ ଲୋକେ କୁଆଡ଼େ ଗଲେ, ସେ ବିଷୟରେ ଅନୁସନ୍ଧାନ କରିବେ । ତମ ଗାଁର ସବୁଲୋକ ଏଠାରେ ବସବାସ କଲେ ଡାକୁଦଳ ଏ ଗାଁକୁ ମଧ୍ୟ ନଷ୍ଟ ଭ୍ରଷ୍ଟ କରିଦେବେ । ତମେମାନେ ନିଜେ ନିଜେ ସଶସ୍ତ୍ର କରି ଡାକୁଦଳ ସହିତ ମୁକାବିଲା କର । ତୁମକୁ ଦୁର୍ବଳ ଜାଣି ସେମାନେ ଏପରି ଅତ୍ୟାଚାର



କରୁଛନ୍ତି । କାହିଁ ଆମ ଗ୍ରାମର ସୀମାପର୍ଯ୍ୟନ୍ତ କେବେ ସେମାନେ ଆସିଛନ୍ତି କି ?"

"ମହାଶୟ, ଡାକୁମାନଙ୍କ ସହିତ ଯୁଦ୍ଧ କରିବାକୁ ସମସ୍ତେ ପ୍ରସ୍ତୁତ । କିନ୍ତୁ କି ଭାବରେ କରାହେବ ଓ କିଏ ନେତୃତ୍ୱ ନେଇ ସେ କାର୍ଯ୍ୟ କରିବ ତାହାହିଁ ପ୍ରଶ୍ନ ।" ବୀରସେନ କହିଲା ।

ମୁଖିଆ କିଛି ସମୟ ପର୍ଯ୍ୟନ୍ତ ଚିନ୍ତା କରି କହିଲେ, "ଆମ ଗ୍ରାମରେ ପ୍ରବୋଧାନନ୍ଦ ନାମକ ଜଣେ ସାଧୁ ଅଛନ୍ତି । ପ୍ରତ୍ୟେକ କଥାରେ ଭଲମନ୍ଦ ବିଷୟ ସେହିଁ ଆମକୁ କୁହନ୍ତି । ତାଙ୍କର ନିର୍ଦ୍ଦେଶରେ ଆମେ ଚଳୁଛୁ । ତମେ ତାଙ୍କ ପାଖକୁ ଯାଅ, ସେ ତୁମକୁ ଏ ବିଷୟରେ ନିଶ୍ଚୟ ସାହାଯ୍ୟ କରିବେ ।"

ବୀରସେନ ସାଧୁଙ୍କ ପାଖକୁ ଯାଇ ତାଙ୍କ ଗ୍ରାମର ସମସ୍ୟା ବିଷୟ କହିଲା । ସାଧୁ କହିଲେ, "ମୁଁ ତୁମ୍ଭ ସହିତ ତୁମ ଗ୍ରାମକୁ ଯାଇ ଲୋକମାନଙ୍କୁ ମୁଁ ବୁଝାଇ ଦେବି କିପରି ଡାକୁମାନଙ୍କର ମୁକାବିଲା କରିବାକୁ ହେବ ।"

ପରଦିନ ସାଧୁଙ୍କୁ ଧରି ବୀରସେନ ଯାଇ ଗ୍ରାମରେ ପହଞ୍ଚିଲା । ଗ୍ରାମବାସୀମାନେ କୁହାକୁହି ହେଲେ କି ଜଣେ ଶକ୍ତିମାନ୍ ସାଧୁ ଆସିଛନ୍ତି ଯିଏ ତାଙ୍କୁ ଡାକୁମାନଙ୍କ ଅତ୍ୟାଚାରରୁ ରକ୍ଷା କରିବେ । ଗ୍ରାମବାସୀମାନେ ଏକତ୍ର ହୋଇ ସାଧୁଙ୍କୁ ସ୍ୱାଗତ କଲେ । ଗ୍ରାମ ମୁଖିଆ ସାଧୁଙ୍କୁ କହିଲା, "ମହାଶୟ, ଆମେ ଡାକୁମାନଙ୍କ ଦ୍ୱାରା ଅତ୍ୟାଚାରିତ । ସେଥିରୁ ଉଦ୍ଧାର ପାଇବାକୁ ହେଲେ ଆପଣ ଯାହା କହିବେ ଆମେ ତାହା କରିବୁ । କିନ୍ତୁ ଅସ୍ତ୍ରଶସ୍ତ୍ର ତ ଆମ ପାଖରେ ନାହିଁ ।"

"ଅସ୍ତ୍ରଶସ୍ତ୍ରର ଦରକାର ନାହିଁ । କେବଳ ସାହସହିଁ ଯଥେଷ୍ଟ । ସାହସ ଥିଲେ ଆଉ ତମେ ସବୁ ଏକାଠି ହୋଇ ଲଢ଼ିଲେ ସେମାନେ ଆଉ କେବେ ମଧ୍ୟ ଆସିବାକୁ ସାହସ କରିବେ ନାହିଁ ।" ସାଧୁ କହିଲେ ।

"ଆମକୁ ତାହାହେଲେ କୌଣସି ଅଦ୍ଭୁତ ଶକ୍ତି ଦିଅନ୍ତୁ ବା ଅସ୍ତ୍ରଶସ୍ତ୍ର ଚାଳନା ଶିଖାଇ ଦିଅନ୍ତୁ । ଆମେ ଡାକୁଙ୍କ ସହ ଯୁଦ୍ଧ କରିବୁ ।" ମୁଖିଆ କହିଲା ।

"ଦେଖ, ମୋ ପାଖରେ କୌଣସି ଜାଦୁବିଦ୍ୟା ବା ଅଲୌକିକ ଶକ୍ତି ନାହିଁ ।



କେବଳ ମୋ ପାଖକୁ ଆସି ମୋ କଥା ଶୁଣ । ଦେଖିବ ଯେ ତମେ ନିଜେ ନିଜେହିଁ ସାହସ ପାଇବ । ପରୀକ୍ଷା ସ୍ୱରୂପ ଜଣେ ଦୁର୍ବଳ ଲୋକକୁ ମୋ ପାଖକୁ ପଠାଅ । ତାକୁ ମୁଁ ସାହସୀ କରିଦେବି ।" ସାଧୁ କହିଲେ ।

ଗ୍ରାମବାସୀମାନେ ନିଜ ନିଜ ଭିତରେ କଥାବାର୍ତ୍ତା କରି 'ଦୁର୍ବଳ' ନାମକ ଲୋକକୁ ସାଧୁଙ୍କ ପାଖକୁ ପଠାଇଲେ । ପ୍ରକୃତରେ ସେହି ଲୋକଟିର ପ୍ରକୃତ ନାମ କେହି ଜାଣନ୍ତି ନାହିଁ । ସେ ନିଜେ ଦେଖିବାକୁ ତ ପତଳା, ରୋଗା, ତା'ଛଡ଼ା ମୂଷାଟିଏ ବା ବିଲେଇଟିଏ ଦେଖିଲେ ଭୟରେ ଥନିଆ ହୋଇଯାଏ । ତା' ପାଇଁ ତା' ସ୍ତ୍ରୀ ହେଉଛି ପ୍ରଭୁ । ତା' ସ୍ତ୍ରୀର ସେବକ ହୋଇଥାଏ । ସ୍ତ୍ରୀର ବାକ୍ୟ ତା' ପାଇଁ ବେଦବାକ୍ୟ । ସ୍ତ୍ରୀର ନିର୍ଦ୍ଦେଶ ବିନା ସେ ପାଣି ଟିକିଏ ବି ପିଇବ ନାହିଁ । ତେଣୁ ତାକୁ ସମସ୍ତେ ଦୁର୍ବଳ ବୋଲି ଡାକୁଥିଲେ ।

ସାଧୁ ତାକୁ ପାଖକୁ ଡାକି କହିଲେ, "ଶୁଣ ଦୁର୍ବଳ, ମୁଁ ଦିନକ ମଧ୍ୟରେ ତମ୍ଭକୁ ସବଳ ବନାଇ ଦେବି । ଆସ ମୋ ପାଖକୁ ।"

ଦୁର୍ବଳ ସାଧୁଙ୍କ ପାଖକୁ ଯିବାକୁ ବାହାରିବାରୁ ତା' ସ୍ତ୍ରୀ ଆସି ତାକୁ ଧମକ ଦେଇ କହିଲା, "ଶୁଣ, ସାଧୁଙ୍କ ପାଖକୁ ଯଦି ଯାଉଛ ତ ଯାଅ । କିନ୍ତୁ ତା' ପରେ ଫେରି ଆସି ମୁଁ ଯାହା କହିବି କରିବ । ତମେ କିଏ ସାହସ କିଏ ! ତମେ ସାଧୁ ଯାହା କହିବେ ସେଥିରେ ରାଜି ହୋଇଯିବା ଦରକାର ନାହିଁ । ସାବଧାନ ଥିବ । ନହେଲେ ତମ ଅବସ୍ଥା କ'ଣ ହେବ ଦେଖିବ ।"

ଦୁର୍ବଳ ସାଧୁଙ୍କ ପାଖକୁ ଯିବା ମାତ୍ରେ ସାଧୁ ତା' କାନରେ କହିଲେ, "ଶୁଣ, ମୁଁ ତୁମକୁ ସାହସର ସହିତ କାମ କରିବାକୁ କହିବି । ମୋର ଶକ୍ତି ତୁମକୁ ସର୍ବଦା ରକ୍ଷା କରିବ । ତଦ୍ୱାରା ତୁମର ଅପାର ଗୌରବ ଲାଭ ହେବ । ଏବେ ତୁମ ପତ୍ନୀ ଗର୍ବିତ ହେଲେ ପରେ ଖୁସି ହେବ । ମନେରଖ; ମୋ ସାହାଯ୍ୟରେହିଁ ତମେ ଜୀବନରେ କିଛି କାମ କରି ପାରିବ ।"



ସାଧୁଙ୍କର ସବୁ କଥା ଦୁର୍ବଳ ମନଦେଇ ଶୁଣିଲା । ତା'ପରେ ସାଧୁ କହିଲେ, "ଏବେ ତୁମେ ଯାଇପାର । କିନ୍ତୁ ମନେରଖ କାଲି ଶୀଘ୍ର ଏଠାକୁ ଆସିଯିବ । ଅନ୍ୟ ସବୁ ଲୋକ ମଧ୍ୟ ଏଠାକୁ ଆସିବେ । ସେମାନଙ୍କ ଉପସ୍ଥିତିରେହିଁ ମୁଁ ତମ ଦ୍ୱାରା କିଛି ସାହସିକ କାର୍ଯ୍ୟ କରାଇ ପାରିବ ।"

ପରଦିନ ସାଧୁ ଓ ଗ୍ରାମବାସୀ ଗାଁ ମୁଣ୍ଡ ବରଗଛ ମୂଳରେ ଏକତ୍ରିତ ହୋଇଥା'ନ୍ତି । ସମସ୍ତେ ଦୁର୍ବଳର ଅପେକ୍ଷାରେ ଥା'ନ୍ତି । ଟିକିଏ ଡେରି କରି ଦୁର୍ବଳ ଆସିଲା ।

ସାଧୁ କହିଲେ, "ଦୁର୍ବଳ, ତମେ ଡେରିରେ ଆସିଲ । ମୁଁ ଚାହୁଁଥିଲି ତମେ ଥରେ ଏକଲା ମୋ ପାଖକୁ ଆସିଥା'ନ୍ତ । କ'ଣ, ତମେ ସାହସିକ କାମ କରିବାକୁ ଚାହୁଁନାହଁ ?"

"ସ୍ୱାମୀଜୀ, କ୍ଷମା କରନ୍ତୁ । ମୁଁ ସାହସିକ କାର୍ଯ୍ୟ ନିଶ୍ଚୟ କରିବି । ପ୍ରଥମେ କରିବି ନା ନାହିଁ ଭାବୁ ଭାବୁ ଡେରି ହୋଇଗଲା ।" ଦୁର୍ବଳ କହିଲା ।

"ଆପଣମାନେ ଦେଖନ୍ତୁ, ମୋ କଥା ପ୍ରମାଣିତ ହୋଇଛି ନା ନାହିଁ ।" ସାଧୁ କହିଲେ ।

"ସ୍ୱାମୀଜୀ, ଆପଣ କହିଥିଲେ ନା ଦୁର୍ବଳକୁ ମୁଁ ସବଳ ବନାଇ ଦେବି ? କିନ୍ତୁ ସାହସିକ କାର୍ଯ୍ୟ କରିବ ନା ନାହିଁ ସେତିକି ଠିକ୍ କରିବା ପାଇଁ ଦୁର୍ବଳକୁ ଦିନଟିଏ ଲାଗିଗଲା । ତଥାପି କ'ଣ ଆପଣ ଭାବୁଛନ୍ତି ଯେ ଆପଣଙ୍କ କଥାର ସତ୍ୟତା ପ୍ରମାଣ କରିପାରିବେ ?" ଗ୍ରାମବାସୀମାନେ ଥଟ୍ଟାଳିଆ ସ୍ୱରରେ କହିଲେ ଓ ହସିଲେ ।

ସାଧୁ କିଛି ସମୟ ଚୁପ୍ ହୋଇ ବସିବା ପରେ ଗମ୍ଭୀର ସ୍ୱରରେ କହିଲେ, "ତୁମେ-ମାନେହିଁ କହିଥିଲେ ଯେ ଦୁର୍ବଳ ନିଜ ସ୍ତ୍ରୀ କଥାକୁ ବିରୋଧ କରିପାରେ ନାହିଁ । ଦୁର୍ବଳର ସ୍ତ୍ରୀ ମଧ୍ୟ ସିଧା କହିଲା କି ଦୁର୍ବଳ କିଛି ସାହସିକ କାର୍ଯ୍ୟ କରିବା ସେ ଚାହେଁନି । ଏସବୁ ସତ୍ତ୍ୱେ ଦୁର୍ବଳ ନିଜେ ସାହସିକ କାମ କରିବା ପାଇଁ ମନସ୍ଥ କରି ନିଜର ସ୍ତ୍ରୀ କଥାକୁ ଖାତିର ନ କରି ଏଠାରେ ଉପସ୍ଥିତ ହୋଇପାରିଛି

ଏହା କ'ଣ ତା' ପାଇଁ ଏକ ସାହସିକ ପଦକ୍ଷେପ ନୁହେଁ ?"

ଏକଥା ଶୁଣି ଉପସ୍ଥିତ ଜନତା ଟିକିଏ ହସି ପକାଇଲେ । କିନ୍ତୁ ସାଧୁ ପୁଣି ବୁଝାଇ କହିଲେ, "ତା' କ୍ଷେତ୍ରରେ ସେ ସାହସିକ କାର୍ଯ୍ୟ କରିଛି । ତୁମମାନଙ୍କର ହସିବାର କୌଣସି ଯୋଗ୍ୟତା ନାହିଁ । ସେ ତା'ର ପତ୍ନୀକୁ ଡ଼ରୁଛି । ତମେ-ମାନେ ମଧ୍ୟ ଡ଼ାକୁମାନଙ୍କୁ ଡ଼ରୁଛ । ନିଜେ ସାହସ ରଖିବାରୁ ତୁମ ପଡ଼ୋଶୀ ଗ୍ରାମବାସୀ ଡ଼ାକୁମାନଙ୍କୁ ତଡ଼ିଦେଲେ ଓ ଡ଼ାକୁମାନେ ଭୟରେ ସେଠାରେ ପଶିପାରୁ ନାହାନ୍ତି ।"

ଏବେ ସାଧୁଙ୍କ କଥା ସମସ୍ତେ ବୁଝିଲେ ଓ କହିଲେ, "ସାଧୁଜୀ, ଆପଣ ଆମମାନଙ୍କ ଆଖି ଖୋଲିଦେଲେ । ଏବେଠାରୁ ଆମେ ଏକତାବଦ୍ଧ ହୋଇ ଚୋରମାନଙ୍କୁ ତଡ଼ିବା । ସେଇଟା ଆଉ ବଡ଼ କାମ କ'ଣ ?"

ସେହିଦିନ ଗ୍ରାମବାସୀମାନେ ଏକଜିତ ହୋଇ କିପରି ଡାକୁମାନଙ୍କୁ ସାମ୍ନା କରିବେ, ସେ ବିଷୟରେ ଆଲୋଚନା କରି କିଛି ଉପାୟ ସ୍ଥିର କଲେ । ପରଥର ଡାକୁଦଳ ଆସି ଗ୍ରାମ ସୀମାନ୍ତରେ ପହଞ୍ଚିବା ମାତ୍ରେ ଶତାଧିକ ଲୋକ ଲାଠି ଧରି ଏକାଠି ସେମାନଙ୍କୁ ଘେରି ଯିବାକୁ ପ୍ରସ୍ତୁତ ହେଲେ । ପୁରୁଷ-ମାନଙ୍କ ପଛରେ ସ୍ତ୍ରୀମାନେ ମଧ୍ୟ ସଂଘବଦ୍ଧ ଭାବରେ ହାତରେ ମଶାଲ ଧରି ଅପେକ୍ଷା କରିଥାନ୍ତି । ଡାକୁମାନେ ପ୍ରଥମେ କିଛି ବୁଝି ନପାରି ପରସ୍ପର ଅନାଇଲେ । ତା'ପରେ ପଳାଇଗଲେ ।

ସାଧୁ ଖୁସି ହୋଇ ବୀରସେନ ଓ ଗ୍ରାମ-ବାସୀଙ୍କୁ ଆଶିର୍ବାଦ ଦେଇ ଅନ୍ୟ ଗ୍ରାମକୁ ଲେଉଟି ଗଲେ । ଏସବୁ କଥା ଡ଼ାକୁମାନେ ଖବର ସଂଗ୍ରହ କରି ଜାଣିପାରିଲେ, ତା'ପରେ ଏ ଗ୍ରାମକୁ ଲୁଣ୍ଠନ କରିବା ଆଶା ସଂପୂର୍ଣ୍ଣ ଛାଡ଼ିଦେଲେ । ସେହିଦିନଠାରୁ ଗ୍ରାମବାସୀ-ମାନେ ମଧ୍ୟ ଆନନ୍ଦରେ ଓ ନିର୍ଭୟରେ କାଳାତିପାତ କରିବାକୁ ଲାଗିଲେ ।



# ଅପୂର୍ବ ଯୁକ୍ତି

ଗୋଟିଏ ଗ୍ରାମରେ ଚାରିଜଣ ଯୁବକ ଥିଲେ। ସେମାନେ ସାଙ୍ଗ ହୋଇ ଅନେକ ଡକାୟତି କରନ୍ତି; ଚୋରି ମଧ୍ୟ କରନ୍ତି। ଥରେ ସେଇ ଗାଁର ଜଣେ ଚାଷୀର ଛେଳିଟିକୁ ଚୋରି କରି ଗାଁ ମୁଣ୍ଡରେ ଥିବା ବରଗଛ ମୂଳରେ କାଟି, ରାନ୍ଧି, ଖାଇଲେ।

ଚାଷୀଟି ଏକଥା ଶୁଣି ଭାବିଲା ଗ୍ରାମର ମୁଖିଆକୁ ଏକଥା କହି ଲାଭ ନାହିଁ। କାରଣ ସେମାନଙ୍କର ଗୁଣ୍ଡାମୀକୁ ଡରି ସେ କିଛି କହିବେ ନାହିଁ। ତେଣୁ ସେ ସିଧା ରାଜାଙ୍କ ପାଖକୁ ଯାଇ ସେମାନଙ୍କ ବିରୁଦ୍ଧରେ ଅଭିଯୋଗ କଲା। ରାଜା ଚାରିଜଣ ଚୋରଙ୍କୁ ଦରବାରକୁ ଡକାଇ ଆଣିଲେ ଓ ସେମାନଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ କଥା କହିଲେ। ସେମାନଙ୍କ ମଧ୍ୟରୁ ରାମୁ କହିଲା, "ମହାରାଜ, ଏ ଚାଷୀର ଛେଳି ତ ନାହିଁ, ଚୋରି କରିବାର ପ୍ରଶ୍ନ ଉଠୁଛି କୁଆଡୁ ?"

ଚାଷୀଟି କହିଲା, "ଆରେ ରାମୁ, ଗାଁ ମୁଣ୍ଡରେ ଥିବା ପୋଖରୀ କୂଳରେ ବରଗଛ ମୂଳେ ତମେ ମୋର ଛେଳିଟାକୁ ମାରି ଖାଇନ ?"

"ମହାରାଜ, ଆମ ଗାଁରେ ପୋଖରୀ ତ ନାହିଁ, ବରଗଛ ତ ଆଦୌ ନାହିଁ!" ଆଉ ଜଣେ ଚୋର କହିଲା।

"ମହାରାଜ, ଏ ମିଥ୍ୟାଚାର, ପୋଖରୀର ପୂର୍ବ ତଟରେ ଅଷ୍ଟମୀ ଦିନ ଏମାନେ ମୋ ଛେଳିକୁ ହାଣି ଖାଇଛନ୍ତି।" ଚାଷୀ କହିଲା।

ଅନ୍ୟ ଜଣେ ଚୋର ତତ୍‌କ୍ଷଣାତ୍ କହିଲା, "ମହାରାଜ, ଆମ ଗାଁର ପୂର୍ବଦିଗହିଁ ନାହିଁ। ଆଉ ଅଷ୍ଟମୀ ତିଥି ତ ଆମ ଗାଁକୁ କେବେ ମଧ୍ୟ ଆସେନାହିଁ।"

ଏକଥା ଶୁଣିବା ପରେ ରାଜା ଓ ଦରବାରର ଅନ୍ୟାନ୍ୟ ଲୋକ ଚାରି ଚୋରଙ୍କର ବଦମାସି ବେଶ୍ ବୁଝିଗଲେ। ରାଜା ଚାଷୀଟିକୁ କ୍ଷତିପୂରଣ ଦେଲେ ଓ ଚୋରମାନଙ୍କୁ ସିଧା କାରାଗାରକୁ ପଠାଇ ଦେଲେ।







# ରାଜଜ୍ୟୋତିଷ

ପାରସ୍ୟ ଦେଶରେ ରହୁଥାଏ ହୁସେନ୍ ନାମକ ଏକ ଗରିବ ଲୋକ । ଅଳ୍ପ କିଛି ଜିନିଷ ବିକି କରି ପେଟ ପୋଷେ । ଦିନେ ତା'ର ସ୍ତ୍ରୀ ସ୍ନାନ କରିବା ପାଇଁ ନଗରର ସ୍ନାନାଗାରକୁ ଗଲା । ଠିକ୍ ସେଇ ସମୟରେ ଜଣେ ଧନୀ ସ୍ତ୍ରୀ ଆସି ପହଞ୍ଚି ଜଗୁଆଳୀକୁ କହିଲେ, "ଏହିକ୍ଷଣି ମୁଁ ସ୍ନାନ କରିବ; ତେଣୁ ସମଗ୍ର ସ୍ନାନାଗାର ଖାଲି କରିବା ଦରକାର ।"

"ଯେ ଆଜ୍ଞା" କହି ଜଗୁଆଳୀଟି ଅନ୍ୟାନ୍ୟ ସ୍ତ୍ରୀ ଲୋକମାନଙ୍କୁ କିଛି ସମୟ ପାଇଁ ସେଠାରୁ ବାହାର କରିଦେଲା ।

ହୁସେନ୍‌ର ସ୍ତ୍ରୀ ହାଲିମା ରାଗିଯାଇ ଜଗୁଆଳୀକୁ କହିଲା, "ଇଏ କେଉଁ ମହାରାଣୀ କି ? ଯାହାଙ୍କ ପାଇଁ ଆମ ସମସ୍ତଙ୍କୁ ଏତେ ସମୟ ବାହାରେ ଅପେକ୍ଷା କରିବାକୁ ପଡ଼ିବ ?"

"ଜାଣନି ସେ କିଏ ? ସେ ପରା ରାଜ-ଜ୍ୟୋତିଷଙ୍କ ପତ୍ନୀ!" ଜଗୁଆଳୀ କହିଲା ।

ହାଲିମା ବିରକ୍ତ ହୋଇ ଘରକୁ ଫେରି ଆସି ହୁସେନ୍‌କୁ କହିଲା, "ତମେ କେଉଁଥିକୁ ଯୋଗ୍ୟ ନୁହଁ, ତମେ ନହାତି ଏକ ସାଧାରଣ ଜ୍ୟୋତିଷ ବି ଯଦି ହୋଇପାରନ୍ତ ତେବେ ଅନ୍ତତଃ ସମାଜରେ ମୋର କିଛିଟା ପ୍ରତିପତ୍ତି ବଢ଼ିଯା'ନ୍ତା ।"

"ମୁଁ ତ ଜାତକ କରିବା ଜାଣିନି । ଗ୍ରହନକ୍ଷତ୍ରଙ୍କ ଗତିବିଧି ଜାଣେନି । ଆଉ ଜ୍ୟୋତିଷ ହେବ କିପରି ?" ହୁସେନ୍ କହିଲା ।

"ସେସବୁ ମୁଁ କିଛି ଜାଣିନାହିଁ । ତମେ କାଲିଠାରୁ ଜ୍ୟୋତିଷ ନ ହେବ ତ ମନେରଖ ତୁମ ସହିତ ମୋର କୌଣସି ସମ୍ପର୍କ ନାହିଁ: ମୁଁ ବାପଘରକୁ ଚାଲିଯିବ ।" ହାଲିମା ଏପରି ଧମକ ଦେଲା ।



ହାଲିମା'ର ପ୍ରସ୍ତାବ ଏଡ଼ିଦେବାର ସାହସ ହୁସେନ୍‌ର ନଥିଲା । ହାଲିମାର ଆଦେଶରେ ସେ କିଛି ଜ୍ୟୋତିଷ ବହି ଧରି ଯାଇ ସ୍ନାନାଗାରର ସାମ୍ନାରେ ରାସ୍ତା ଉପରେ ବସିଲା ।

ସେଦିନ ସ୍ୱୟଂ ସେ ରାଜ୍ୟର ରାଜକୁମାରୀ ସେଠାକୁ ସ୍ନାନ କରିବାକୁ ଆସିଥା'ନ୍ତି । ସ୍ନାନ କରିବା ପୂର୍ବରୁ ସେ ଦାସୀ ହାତରେ ତାଙ୍କର ରତ୍ନ ମୁଦିଟି ଦେଇ କହିଲେ, "ଏଇଟା ଯତ୍ନରେ ରଖିଥା', ମୁଁ ସ୍ନାନ କରିବା ପରେ ମୋତେ ଦେବୁ ।"

ରାଜକୁମାରୀ ସ୍ନାନ କରିବାକୁ ଯିବା ପରେ ଦାସୀଟି ମୁଦିଟିକୁ କେଉଁଠି ରଖିବ ଭାବି ସ୍ଥିର କରି ପାରିଲା ନାହିଁ । ଶେଷରେ କାନ୍ଥରେ ଥିବା ଏକ ଫାଟ ଭିତରେ ମୁଦିଟି ରଖି ନିଜ ମୁଣ୍ଡରୁ ଟିକିଏ ଅଡୁଆ ବାଳ କାଢ଼ି ତାକୁ ସୁଦ୍ଧା ସେ ଫାଟରେ ଗୁଞ୍ଜି ଦେଲା । ବହୁତ ସମୟ ପରେ ରାଜକୁମାରୀ ସ୍ନାନ ସାରି ସେଠାକୁ ଆସି ଦାସୀକୁ ମୁଦି ମାଗିଲେ । ଇତିମଧ୍ୟରେ ଦାସୀଟି ମୁଦି ରଖିବା ସ୍ଥାନ ପାଶୋରି ପକାଇଥାଏ । ଏବେ କରେ କ'ଣ ?"

ତା' ମୁହଁ ଦେଖି ରାଜକୁମାରୀ ବୁଝିଗଲେଣି ଯେ ମୁଦିଟି ହଜି ଯାଇଛି, ସେ ରାଗିଯାଇ କହିଲେ, "ମୁଦି ନ ଆଣିଲେ ତୋର ମୁଣ୍ଡକାଟ କରିବି ।"

ବିଚାରି ଦାସୀଟି କାନ୍ଦି କାନ୍ଦି ଯାଇ ଜ୍ୟୋତିଷ ହୁସେନ୍ ପାଖରେ ପହଞ୍ଚି ସବୁକଥା କହିଲା । ହୁସେନ୍ ବିଚାରା କ'ଣ କରିବ? ସେ ବଲ ବଲ କରି ସେ ଦାସୀ ଆଡ଼େ ଅନାଇଥାଏ । ତା'ର ଭାବ ହେଲା, ଦାସୀ ବିଚାରୀ ଯେମିତି ଅସହାୟ, ସେ ବି ସେମିତି ଅସହାୟ ।

ସେ ସେମିତି ଅନାଇ ରହିଥିବାର ଦେଖି ଦାସୀ ପଚାରିଲା, ତମେ ଦେଖୁଛ କ'ଣ ?"

ହୁସେନ୍ ଦାସୀକୁ ଚାହିଁ ଦେଖିଲା ତା'ର ଓଢ଼ଣୀରେ ଏକ ଫଟା ଅଂଶ ଭିତରୁ ତା'ର ବାଳ ସବୁ ବାହାରକୁ ବାହାରିଛି । ସେ ଧୀରେ କହିଲା, "ମୁଁ କେବଳ ଦେଖିପାରୁଛି ଗୋଟିଏ ଫାଟ ଓ ତା' ମଧ୍ୟରୁ କିଛି ବାଳ ବାହାରିଛି ।"

ଏକଥା ଶୁଣିବା ମାତ୍ରେ ଦାସୀର ସବୁ ମନେ ପଡିଗଲା ସେ ଦୌଡ଼ିଯାଇ ମୁଦିଟିକୁ ଫାଟ

ସନ୍ଧିରୁ ବାହାର କରି ଆଣି ରାଜକୁମାରୀକୁ ଦେଲା ଓ ଜ୍ୟୋତିଷ କଥା କହିଲା ।

ରାଜକୁମାରୀ ଏହା ଶୁଣି ଆଶ୍ଚର୍ଯ୍ୟ ହେଲେ । ଇଏ ତ ପ୍ରତ୍ୟକ୍ଷ ଅନୁଭୂତ! ସେ ଯାଇ ରାଜାଙ୍କୁ କହିଲେ । ରାଜା ଜ୍ୟୋତିଷକୁ ଡକାଇ ଖୁବ୍ ସମ୍ମାନ କଲେ ।

କିନ୍ତୁ କିଛିଦିନ ପରେ ମହା ବିଷମ ପରୀକ୍ଷାରେ ପଡ଼ିଲେ ଜ୍ୟୋତିଷ! ରାଜମହଲରୁ ଏକ ଚୋରଦଳ ବହୁତ ମୂଲ୍ୟବାନ୍ ଜିନିଷ ଚୋରି କରିଥା'ନ୍ତି । ରାଜା ହୁସେନକୁ ଡକାଇ ଏହାର ତଥ୍ୟ ନିରୂପଣ ପାଇଁ ଆଦେଶ ଦେଲେ । ହୁସେନ୍ ଚାଳିଶ୍ ଦିନ ସମୟ ରାଜାଙ୍କୁ ମାଗିଲା । ରାଜା ସେଥିରେ ସମ୍ମତ ହେଲେ ।

ହୁସେନ୍ ଘରକୁ ଫେରି ହାଲିମାକୁ କହିଲା, "ବାସ୍, ଏବେ ଜ୍ୟୋତିଷ-ଗିରି ଦେବାର ଫଳ ପାଅ । ଚାଳିଶ ଦିନ ଭିତରେ ଚୋର ନ ଧରାଇ ଦେଲେ ମୁଣ୍ଡକାଟ । ଏବେ କ'ଣ କରିବା ?"

ଚାଳିଶ ଦିନର ହିସାବ ରଖିବା ପାଇଁ ହାଲିମା ଗୋଟିଏ ଡବାରେ ଚାଳିଶଟି ଖଜୁରୀ କୋଳି ରଖିଲା । ତା'ପରେ ହୁସେନ୍‌କୁ ଡାକି କହିଲା, "ତମେ ପ୍ରତିଦିନ ଗୋଟିଏ ଗୋଟିଏ ଏଥିରୁ ଖାଇବ । ଶେଷଟି ଯେଉଁଦିନ ଖାଇବ ସେହିଦିନ ଆମେ ଏ ରାଜ୍ୟ ଛାଡି ପଳାଇବା ।

ଭାଗ୍ୟକୁ ଚୋର ଦଳରେ ଥିଲେ ଚାଳିଶ୍ ଜଣ ଚୋର । ସେମାନେ ଶୁଣିଲେ ତାଙ୍କୁ ଧରିବା ପାଇଁ ରାଜା ଜ୍ୟୋତିଷଙ୍କୁ କହିଛନ୍ତି ।





ଏକଥାର ସତ୍ୟତା ଜାଣିବା ପାଇଁ ଚୋର ସର୍ଦ୍ଦାର ଜଣେ ଚୋରକୁ ସେଇଦିନ ରାତିରେ ଜ୍ୟୋତିଷ ଘରକୁ ପଠାଇଲା ଗୋପନରେ ଖବର ସଂଗ୍ରହ କରିବାକୁ ।

ଚୋରଟି ଯାଇ ହୁସେନ୍‌ର ଘର ପଛପଟେ ଥାଇ ସେମାନଙ୍କ କଥାବାର୍ତ୍ତା ଶୁଣିଲା । ଠିକ୍ ସେତିକିବେଳେ ହାଲିମା ପ୍ରଥମ ଖଜୁରୀଟି ହୁସେନ୍ ହାତରେ ଦେଇ କହିଲା, "ଏଇଟି ହେଲା ପ୍ରଥମ, ବାକି ରହିଲା ଅଣଚାଳିଶଟି ।"

ଏକଥା ଶୁଣିବା ମାତ୍ରେ ଚୋର ବ୍ୟସ୍ତ ହୋଇ ସର୍ଦ୍ଦାର ପାଖକୁ ଦୌଡ଼ିଲା; ସର୍ଦ୍ଦାରକୁ ଦେଖି କହିଲା, "ସର୍ଦ୍ଦାରଜୀ, ଜ୍ୟୋତିଷର ବହୁତ ଜ୍ଞାନ ଅଛି । ମୁଁ ଲୁଚିଥାଇ ଶୁଣିଲି ତା' ସ୍ତ୍ରୀ କହୁଛି, ଇଏ ହେଲା ପ୍ରଥମ, ଆଉ ଅଣଚାଳିଶ ବାକି ରହିଲା ।"

ଦ୍ୱିତୀୟ ଦିନ ଅନ୍ୟ ଗୋଟିଏ ଚୋର ଆସି ଶୁଣିଲା ହାଲିମା କହୁଛି, "ଏବେ ଦୁଇଟି ଗଲା, ଆଉ ବାକି ଅଠତିରିଶ୍ ।" ଏହିପରି ଭାବରେ ସବୁଦିନେ ମୁଖିଆ ଜଣେ ଜଣେ ପଠାଏ । ଶେଷଦିନ ନିଜେ ଆସି ଗୋପନରେ ଏମାନଙ୍କ କଥାବାର୍ତ୍ତା ଶୁଣିଲା ।

ହାଲିମା କହିଲା, "ଦେଖୁଛ ନା, ଇଏ ହେଲା ଶେଷ ଗୋଟିକ, ଏଇଟା ଅନ୍ୟ ସବୁଠାରୁ ବଡ଼ ।"

ଏକଥା ଶୁଣି ସର୍ଦ୍ଦାର ନିଶ୍ଚିତ ହୋଇଗଲା ଯେ ଜ୍ୟୋତିଷ ସବୁ ଜାଣେ । ସେ ଘର ଭିତରକୁ ପଶି ଆସି ହୁସେନ୍‌ର ପାଦରେ ପଡ଼ି କହିଲା, "ମହାଶୟ, ଆମକଥା ରାଜାଙ୍କୁ କହିବେ ନାହିଁ । ଆମେ ରାଜପ୍ରାସାଦରୁ ଯାହା ନେଇଥିଲୁ ଫେରେଇ ଦେଉଛୁ । ତା'ଛଡ଼ା ଆପଣଙ୍କୁ କିଛି ଅଧିକା ଧନରତ୍ନ ଦେଉଛୁ । ରାଜାଙ୍କ ପାଖରେ ଧରା ପଡ଼ିଲେ ତ ଆମ ସମସ୍ତିଙ୍କର ମୁଣ୍ଡକାଟ ହେବ ।"

"ଠିକ୍ ଅଛି । ମୁଁ ତମମାନଙ୍କ କଥା ରାଜାଙ୍କୁ କେବେ ମଧ୍ୟ କହିବି ନାହିଁ ।" ହୁସେନ୍ କଥା ଦେଲା ।

ସେଇଠାରୁ ଫେରି ସର୍ଦ୍ଦାର ସବୁତକ ରାଜପ୍ରାସାଦର ଲୁଟିଥିବା ଧନକୁ ଏକାଠି କରି ନେଇ ହୁସେନ୍ ଘରେ ଦେଇ ଆସିଲା ।

ତାଙ୍କ ପ୍ରାଣରକ୍ଷା ପାଇଁ କଥା ଗୋପନ ରଖିବାକୁ ହୁସେନ୍‌କୁ କିଛି ଅଧିକା ଧନ ଦେଲା ।

ପରଦିନ ରାଜାଙ୍କୁ ଭେଟି ସବୁ ଧନରତ୍ନ ଜ୍ୟୋତିଷ ନେଇ ରାଜାଙ୍କୁ ଦେଲା । ରାଜା ମୁଗ୍ଧ ହୋଇ ଖାଲି ହୁସେନ୍‌ର ଜ୍ୟୋତିଷୀ ଗଣନା ଶକ୍ତିର ପ୍ରଶଂସା କରି ଚାଲିଲେ । ଏଣେ ରାଜା ଯେତେ ଯେତେ ପ୍ରଶଂସା କରୁଥା'ନ୍ତି ହୁସେନ୍ ଲଜ୍ଜାରେ ଓ ଭୟରେ ସେତେ ସେତେ ସଂକୁଚିତ ଓ ବିକଳ ହେଉଥାଏ । ସମସ୍ତେ କହୁଥା'ନ୍ତି ଜ୍ୟୋତିଷ ଅତ୍ୟନ୍ତ ଗୁଣୀ ବ୍ୟକ୍ତି, ତେଣୁ ନମ୍ର ଓ ବିନୟଭାବ ଦେଖାଉଛନ୍ତି । ହୁସେନ୍ ଖାଲି ଭୟରେ ଅପେକ୍ଷା କରିଥାଏ କେବେ ତା' ଜୀବନର ଶେଷ ଦିନ ଆସିବ ଯେଉଁଦିନ ସବୁକଥା ଧରା ପଡ଼ିଯିବ ।

ଏକଥା ଭାବି ଭାବି ବଗୃବକୁ ଆଉ ଖାଇବା ରୁଚିଲା ନାହିଁ, ରାତିରେ ଶୋଇ ମଧ୍ୟ ପାରିଲା ନାହିଁ । ଦିନେ ଭାବି ଭାବି ତାକୁ ଗୋଟାଏ ବୁଦ୍ଧି ଜୁଟିଗଲା । ସେ ଭାବିଲା ରାଜଦରବାରକୁ ଯାଇ ପାଗଳ ପରି ବ୍ୟବହାର କଲେ ମଥା ଖରାପ ହୋଇଯାଇଛି ବୋଲି ରାଜା ଭାବିବେ ଓ ତା'ପରେ ତା'ଠାରୁ ଆଉ ଜ୍ୟୋତିଷ ଗଣନା ଆଶା କରିବେ ନାହିଁ ।

ଦିନେ ସେ ନିଜର ଗୋଟାଏ ଘରପିନ୍ଧା ପୋଷାକ ଅଧା ଓଦା ହୋଇଛି ପିନ୍ଧି, ପାଟି ଚିତ୍କାର କରି ଯାଇ ଦରବାରରେ ପହଞ୍ଚି ରାଜାଙ୍କ ହାତ ଧରି ସିଂହାସନରୁ ଟାଣି ଆଣି ତଳେ ପକାଇ ଦେଲା । ରାଜା ଏପରି ଅଗୃନକ ବ୍ୟବହାର ଦେଖି କ୍ରୋଧରେ ଅଗ୍ନିଶର୍ମା ହୋଇ



କିଛି କହିବା ପୂର୍ବରୁହିଁ ଭୀଷଣ ଶବ୍ଦ କରି ଝାଡ଼ର ଗୋଟାଏ କାଠ ସିଂହାସନ ଉପରେ ଖସି ପଡ଼ିଲା । ଆଉ ମୁହୂର୍ତ୍ତେ ବିଳମ୍ବ ହୋଇଥିଲେ ରାଜାଙ୍କର ପ୍ରାଣ ଯାଇଥା'ନ୍ତା । ସଙ୍ଗେ ସଙ୍ଗେ ରାଜାଙ୍କର ପ୍ରଚଣ୍ଡ କ୍ରୋଧ ଆନନ୍ଦ ଓ ପୁଲକରେ ପରିଣତ ହେଲା । ସେ ହୁସେନ୍‌କୁ ବାରମ୍ବାର କୃତଜ୍ଞତା ଜଣାଇ କହିଲେ, "ଆପଣଙ୍କ ପରି ଅସାଧାରଣ ଜ୍ୟୋତିର୍ବିଦ୍ୟା ଜାଣିଥିବା ଜ୍ୟୋତିଷ ମୁଁ କେବେ ଦେଖି ନଥିଲି । ଆପଣ ତ ତ୍ରିକାଳଦର୍ଶୀ । ମୋର ଭବିଷ୍ୟତ ବିପଦ ଆପଣ ଜାଣିବା ମାତ୍ରେ ଅଧେ ସ୍ନାନ କରି ଓଦା ଲୁଗାରେ ଆସି ମୋତେ ମୃତ୍ୟୁ ମୁଖରୁ ଟାଣି ଆଣିଲେ !" ସେଠାରେ ଉପସ୍ଥିତ ସମସ୍ତ ରାଜପରିଷଦବର୍ଗ ହୁସେନ୍‌ର ପାଦତଳେ ପଡ଼ିଲେ ।

ହୁସେନ୍‌ର ଭାଗ୍ୟ ପ୍ରବଳ ଥିଲା । ତେଣୁ ସେ ଯେତେଥର ଅନ୍ୟ ଚେଷ୍ଟା କରୁଛି ଫଳ ତା'ର ସପକ୍ଷରେ ଯାଉଛି । ରାଜା, ମନ୍ତ୍ରୀ ଓ ପାରିଷଦ ବର୍ଗ ରାଜାଙ୍କ ପ୍ରାଣରକ୍ଷା ଯୋଗୁ ଅତ୍ୟନ୍ତ ମୁଗ୍‌ଧ । ରାଜା କହିଲେ, "ଆଜି ଏହି ମହାନୁଭବ ବ୍ୟକ୍ତି ମୋ ପାଇଁ ଯାହା କରିଛନ୍ତି ତାକୁ ମୁଁ କପରି ଶୁଝିବି ? ଆଜିଠାରୁ ସେ ଦରବାରର ରାଜଜ୍ୟୋତିଷ ପଦରେ ରହିବେ । କାରଣ ଏହା ରାଜ୍ୟର ସୁରକ୍ଷା ପାଇଁ ଅତ୍ୟନ୍ତ ଆବଶ୍ୟକ ।" ପୁରୁଣା ରାଜଜ୍ୟୋତିଷ ସାଧାରଣ ଜ୍ୟୋତିଷ ହୋଇ ରହିଲେ । ହୁସେନ୍ ଓ ହାଲିମା ବହୁତ ଆନନ୍ଦିତ ହେଲେ ।

ପରଦିନ ହାଲିମା ନଗରର ସ୍ନାନାଗାରକୁ ଗଲା ରାଜଜ୍ୟୋତିଷର ସ୍ତ୍ରୀ ଭାବରେ । ସେଠାରେ ପୁରୁଣା ରାଜଜ୍ୟୋତିଷଙ୍କ ସ୍ତ୍ରୀ ସ୍ନାନ କରୁଥିଲେ । କିନ୍ତୁ ନୂଆ ରାଜଜ୍ୟୋତିଷଙ୍କ ପତ୍ନୀଙ୍କ ସମ୍ମାନରେ ସମସ୍ତଙ୍କୁ ସେଠାରୁ ବାହାର କରି ଦିଆଗଲା । ହାଲିମା ନିଜର ଦାସୀମାନଙ୍କୁ ନେଇ ବଡ଼ ସମ୍ମାନର ସହିତ ସ୍ନାନାଗାରରେ ପ୍ରବେଶ କଲା ।



## ଲମ୍ବା ପୋକ

ଇଣ୍ଡୋନେସିଆରେ ଏକ ପ୍ରକାର କାଠ ପୋକ ଅଛନ୍ତି ଯେଉଁମାନେ ସାରା ପୃଥିବୀର ପୋକମାନଙ୍କ ମଧ୍ୟରେ ଦୀର୍ଘତମ । ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ସେମାନଙ୍କର ଲମ୍ବା ପ୍ରାୟ ୧୩ ଇଞ୍ଚ ହୋଇଥାଏ ।

## ବିଷ ଫିଙ୍ଗିବା ସାପ

ଏ ପ୍ରକାର ସାପ ବିପଦରେ ପଡ଼ିଲେ ମୁହଁରୁ ପିଚକାରି ପରି ବିଷ ଦୂରରେ ଥିବା ପ୍ରାଣୀର ଆଖିକୁ ଲକ୍ଷ୍ୟ କରି ଫିଙ୍ଗିଥାଏ । ଏହା ଆଠଫୁଟ ଦୂର ପର୍ଯ୍ୟନ୍ତ ଯାଇପାରେ ।





## କୁଶଳୀ ଖୋଦନକାରୀ ମୂଷା

ଇଉରୋପ ଓ ରୁଷିଆରେ ଏକ ପ୍ରକାର ଜଙ୍ଗଲୀ ମୂଷା ଥା'ନ୍ତି, ଯେଉଁମାନେ ପୃଥିବୀର ସବୁ ପ୍ରକାର ପ୍ରାଣୀମାନଙ୍କ ମଧ୍ୟରେ ସର୍ବାଧିକ ବେଗରେ ମାଟି ଖୋଳି ପାରନ୍ତି । ସେ କୋଡ଼ିଏ ମିନିଟରେ ନିଜ ଶରୀରର ଓଜନର ସତୁରି ଗୁଣ ମାଟି ଖୋଳି ଉପରକୁ ଫିଙ୍ଗି ଦେଇପାରେ ।





# CHANDAMAMA

It unfolds the glory of India—both past and present—throu
stories, month after month.

Spread over 64 pages teeming with colourful illustrations, t
magazine presents an exciting selection of tales from mytho
legends, historical episodes,